



**ପ୍ରତିଷ୍ଠାତା - ରାମକୃଷ୍ଣ ନନ୍ଦ**

*ଉପଦେଷ୍ଟାମଣ୍ଡଳୀ*

**ଶ୍ରୀ ସହଦେବ ସାହୁ**
**ଡାକ୍ତର ନିତ୍ୟାନନ୍ଦ ସ୍ୱାଇଁ**

**କାର୍ଯ୍ୟନିର୍ବାହୀ ସମ୍ପାଦିକା**
**ଅନସୂୟା ନନ୍ଦ**





**୬୩ ବର୍ଷ, ଦ୍ୱିତୀୟ ସଂଖ୍ୟା**
**ସେପ୍‌ଟେମ୍ବର, ୨୦୧୩**
**ବାର୍ଷିକ ମୂଲ୍ୟ--୧୨୦ ଟଙ୍କା**
**ପ୍ରତିଖଣ୍ଡ-- ୧୫ ଟଙ୍କା**



*ଯୋଗାଯୋଗ*
**ତଳତେଲେଙ୍ଗା ବଜାର,**
**କଟକ-୭୫୩୦୦୯**
*ଦୂରଭାଷ*
**୨୪୨୨୫୯୭, ୨୪୨୦୦୭୫**
**ମୋ : ୯୮୬୧୦୬୪୮୯୧**
email :
nandaanasuya@hotmail.com
http://odishapublication.com


✤ ଅନ୍ୟାନ୍ୟ ବିଭାଗର ଲେଖକ-
**ଡ. କୃତ୍ତିବାସ ନାୟକ, ଅପର୍ଣ୍ଣା ଦାଶ**
**ସୁରେଶ କୁମାର ପଣ୍ଡା**

**✤✤✤✤✤✤ ଗଳ୍ପ ଓ ଜୀବନୀ**



**✤✤✤✤✤✤ କବିତା**



**✤✤✤✤✤✤ ଭ୍ରମଣ କାହାଣୀ**



**✤✤✤✤✤✤ ଜ୍ଞାନ-ବିଜ୍ଞାନ**



**✤✤✤✤✤✤ ମନୋରଞ୍ଜନ**




**ସରସ୍ୱତୀ ଶିଶୁ ମନ୍ଦିର, ଆନନ୍ଦପୁରରୁ କ୍ଷିରାବ୍ଧୀ ତନୟା ପଣ୍ଡା, ୭ମ** --୬୩ ବର୍ଷର ପ୍ରଥମ ସଂଖ୍ୟା ସଂସାରଟି ବାସ୍ତବରେ କେବଳ ଶିଶୁମାନଙ୍କ ପାଇଁ ନୁହେଁ, ସମସ୍ତଙ୍କ ପାଇଁ ଏ ସଂସାରଟି ଚିର ଅମର ହୋଇ ରହିବ ବୋଲି ମୋ ବାପା ଓ ମା' ଆର୍ଶୀବାଦ ଦେଇ କହିଲେ ।

**ଶିଶୁପାଳଗଡ଼, ଭୁବନେଶ୍ୱରରୁ, ନକୁଳ ରଥ**--ଜୁନ୍ ମାସର ସଂସାର ପତ୍ରିକାର କେତେକ ଲେଖା ଭଲ ଲାଗିଲାନି । 'ଗୁରୁଭକ୍ତି' ବୈଜ୍ଞାନିକ ଦୃଷ୍ଟିକୋଣରୁ ଗ୍ରହଣୀୟ ନୁହେଁ । ବିନ୍ଧ୍ୟପର୍ବତ ନାରଦଙ୍କ ପାଇଁ ଅଗସ୍ତି ଋଷିଙ୍କ ଆଜ୍ଞାରେ ମୁଣ୍ଡ ନୁଆଁଇ ରହିବାଟା ବିଜ୍ଞାନ ଯୁଗରେ ସମ୍ଭବ କି ? ଏହା କୋମଳମତି ପିଲାଙ୍କୁ ବିଭ୍ରାନ୍ତ କରିବନି କି ?

**ଭଣ୍ଡାରି ପୋଖରୀ, ଭଦ୍ରକରୁ, ରମାକାନ୍ତ ବେହେରା**--ଏ ପତ୍ରିକାଟି ନିୟମିତ ମାସର ପ୍ରଥମ ସମସ୍ତାହରେ ପାଠକମାନଙ୍କ ପାଖକୁ ଆସିଥାଏ । ଗଳ୍ପ, କବିତା ଓ ଅନ୍ୟ ବିଷୟଗୁଡ଼ିକ ଶିକ୍ଷଣୀୟ, କିନ୍ତୁ ଏହାର ସମ୍ପାଦକୀୟ ପୃଷ୍ଠାଟି ସବୁବେଳେ ପାଠକ ଓ ଲେଖକମାନଙ୍କୁ ଚିରଆନନ୍ଦ ଦେଇଥାଏ ।

**ଅରୁଣୋଦୟ ନଗରରୁ ଅଜିତାନନ୍ଦ ଗୋସ୍ୱାମୀ**--ଏ ମାସ ସଂସାରରୁ 'ଆମ ପତାକା' ଶୀର୍ଷକ ଲେଖାରେ -'Saffron' ଲାଲ୍ ବୋଲି ବାରମ୍ବାର ଲେଖା ଯାଇଛି । ସାଫ୍ରନ୍‌ର ଅର୍ଥ କୁମ୍‌କୁମ୍, କମଳା, ଜାଫ୍ରାନ୍ ବା ନାରଙ୍ଗୀ । 'ଧନ୍ଦା'ଟି ଶିକ୍ଷାମୂଳକ ହେବା ଉଚିତ ।

**ଦେଉଳ ସାହି, କଟକରୁ ଇଂ. ରଘୁନାଥ ପ୍ରସାଦ ଦାସ**--ଏ ମାସ ପତ୍ରିକାରେ ବିଜ୍ଞାନ କୁହୁକର ୬ ନମ୍ବର ପ୍ରଶ୍ନରେ 'ବୈମାନିକ' ବଦଳରେ 'ବୈଜ୍ଞାନିକ' ଗରିବାଳା ମହାନ୍ତି ଲେଖିଛନ୍ତି । ଏଥପ୍ରତି ସମ୍ପାଦକଙ୍କ ଦୃଷ୍ଟି ଆକର୍ଷଣ କରୁଛୁ ।

**ମହମ୍ମଦପୁର, ତେଣ୍ଡାକୁଡ଼ା, କଟକରୁ ଗଜେନ୍ଦ୍ର ବେହେରା (ଇ-ମେଲ୍)**-- ଜୁଲାଇ ସଂଖ୍ୟାରେ 'ଅତିଥି' ଗଳ୍ପଟି ଯଦିଓ ନୂତନ ଧରଣର; ତଥାପି ଏଥିରେ ଚଢ଼େଇର ଡେଣା ଥିବା ଯୋଗୁଁ 'ଡେଣୁଆ' ଜୀବ ଲେଖିବା ଠିକ୍ କି ? 'ନୀଳ ସାଟଁ' କବିତାରେ ଲେଖା ଅଛି 'ଅଜଗର ସାଜି ମାରି ଦେଇ ଗଲା ଶକତ ଚୋଟଟେ'-- ଅଜଗର କ'ଣ ଚୋଟ ମାରେ ? ସେଥିରେ ମଧ୍ୟ 'ଉଦୟ'ର ପଦ୍ୟରୂପ 'ଉଦିବ' ଲେଖା ହୋଇଛି । ଏଇଭଳି କେତେକ ଭୁଲ୍ ଦୃଷ୍ଟିଗୋଚର ହେଲା । ସେଥିପ୍ରତି ଦୃଷ୍ଟିଦେବେ । (ବାକି ଆରଥରକୁ)

## ✻✻✻✻ ଅଭିନନ୍ଦନ ✻✻✻✻

ସମଗ୍ର ଓଡ଼ିଶାର ଚିରପରିଚିତ ବିଶିଷ୍ଟ ଶିଶୁ ସାହିତ୍ୟିକ ପରିବାରର ଲେଖକ ତଥା ଶୁଭେଚ୍ଛୁ (ବଡ଼ଭାଇ) **ଶ୍ରୀଯୁକ୍ତ ନଦୀୟା ବିହାରୀ ମହାନ୍ତି**ଙ୍କୁ ଜୀବନବ୍ୟାପୀ ଶିଶୁ ସାହିତ୍ୟ ସାଧନା ପାଇଁ କେନ୍ଦ୍ର ସାହିତ୍ୟ ଏକାଡେମୀ ତରଫରୁ ବିଶିଷ୍ଟ ଶିଶୁ ସାହିତ୍ୟିକ ହିସାବରେ ସମ୍ବର୍ଦ୍ଧିତ କରାଯିବାର ନିଷ୍ପତ୍ତି ହୋଇଛି ।

ଆମର ସ୍ମୃତି ସମିତିର ଉପଦେଷ୍ଟା ତଥା ବିଶିଷ୍ଟ ସାହିତ୍ୟିକ **ଶ୍ରୀଯୁକ୍ତ ମହାପାତ୍ର ନୀଳମଣି ସାହୁ**ଙ୍କୁ ଉତ୍କଳ ସାହିତ୍ୟ ସମାଜ ତରଫରୁ 'ଉତ୍କଳ ରତ୍ନ' ସମ୍ମାନରେ ଭୂଷିତ କରାଯାଇଛି ।

ଆମର ପରିଚିତ ଲେଖକ **ଶ୍ରୀ କମଳାକାନ୍ତ ଜେନା** ଓ **ଶ୍ରୀମତୀ ମୀନାକୁମାରୀ ନନ୍ଦ**ଙ୍କୁ ଓଡ଼ିଶା ବିଜ୍ଞାନ ଏକାଡେମୀ ତରଫରୁ ସମ୍ବର୍ଦ୍ଧିତ କରାଯାଇଛି । ଏଥି ସହିତ ଆମର ଲେଖକ ତଥା ଶିଶୁ ସାହିତ୍ୟିକ **ଶ୍ରୀ ସୂର୍ଯ୍ୟମଣି ସାମନ୍ତରାୟ**ଙ୍କୁ ତାଙ୍କର ଶିଶୁ ସାହିତ୍ୟ କୃତି ପାଇଁ ଉତ୍କଳ ସାହିତ୍ୟ ସମାଜ ପକ୍ଷରୁ 'ରାମକୃଷ୍ଣ ନନ୍ଦ ଶିଶୁସାହିତ୍ୟ ସମ୍ମାନ'ରେ ସମ୍ମାନିତ କରାଯାଇଛି ।

ଏହି ବରପୁତ୍ରମାନଙ୍କର କୃତିରେ 'ସଂସାର' ପତ୍ରିକା ଗର୍ବିତ । ସେମାନଙ୍କୁ ହାର୍ଦ୍ଦିକ ଅଭିନନ୍ଦନ ଜ୍ଞାପନ କରିବା ସହ ତାଙ୍କର ସାହିତ୍ୟ ସାଧନା ଚିର ଗୌରବମୟ ହେଉ-- ଏତିକି ଈଶ୍ୱରଙ୍କ ନିକଟରେ ପ୍ରାର୍ଥନା ।

--'ସଂସାର' ପରିବାର

**ଏ ମାସର ପ୍ରଚ୍ଛଦ**-- 'ମହୁମାଛି ଓ ପ୍ରଜାପତି' ବିଷୟରୁ ପ୍ରଦତ୍ତ ।

# ଏଇ ମନ ବୃନ୍ଦାବନ

ନିର୍ମଳା କୁମାରୀ ମହାପାତ୍ର

ଗଙ୍ଗାସାଗର ସଙ୍ଗମରେ ସ୍ନାନଯୋଗକୁ ଅନେକ ବାହାରିଛନ୍ତି । ବଡ଼ମେଳାର ଆୟୋଜନ । ବହୁ ସାଧୁସନ୍ଥଙ୍କର ସମାଗମ ହେବ । 'ଚାଲ ଯିବା'-- ବିରଜାନାନୀ ଫୁସୁଲାଇଲେ ଜାଆ ଧାରାଶ୍ରୀଙ୍କୁ । ଘରସଂସାରରେ ବାନ୍ଧି ହୋଇ ଯାଇଛନ୍ତି ଧାରାଶ୍ରୀ । ମୁରୁକି ହସିଲେ । ଅର୍ଥ ବୁଝା ପଡ଼ିଲା ନାହିଁ । ତୀର୍ଥ ଯିବାରେ ପ୍ରଥମ ବାଧକ ଅର୍ଥ । ବିରଜା ୩/୪ ମାସ ପାଇଁ ହାତ ଉଧାର ସୂତ୍ରରେ ବାଟଖର୍ଚ୍ଚ ଦେବା ପାଇଁ ପ୍ରସ୍ତୁତ, ତେବେ ଅସୁବିଧା କେଉଁଠି ରହିଲା ?

ଧାରାଶ୍ରୀଙ୍କ ପରିବାରରେ ଚାଷ-ଗୋପାଳନରେ ଜୀବିକାର୍ଜନ । ଖଟିବାକୁ ସ୍ୱାମୀ-ସ୍ତ୍ରୀ ଦୁଇଜଣ । ବିଜୟ ଓ ଧାରାଶ୍ରୀ । ପୋଷ୍ୟ ବର୍ଗରେ ଶାଶୂ-ଶଶୁର ଆଉ ଦୁଇ ପିଲା । ଶଶୁର ଜଗୁଦାସଙ୍କର ବୟସ ୭୮, ଆଉ ଶାଶୂ ଉମାଦେବୀ ତାଙ୍କଠାରୁ ଆଠ ବର୍ଷ ସାନ । ପୁଅ-ଝିଅ ଦୁଇଜଣଯାକ ନିଜ ହାତରେ ଖାଇ ଶିଖିନାହାନ୍ତି କି ଅଙ୍ଗନବାଡ଼ିକୁ ବି ଯାଇନାହାନ୍ତି । ଗୁହାଳରେ ପଟେ ବଳଦ, ଗାଇ ବାଛୁରୀ ଚାରୋଟି ଓ ପାଞ୍ଚଟି ଛେଳି । ଭାଡ଼ିରେ ମାଳେ ବତକ । ସାରାଦିନ ବତକମାନେ ପାଣିରେ ଭାସୁଥାଆନ୍ତି । ସଞ୍ଜ ହେଲେ ଭାଡ଼ିକୁ ଆସନ୍ତି । ଏ ସମସ୍ତଙ୍କର ଦେଖାଶୁଣା କରନ୍ତି ଧାରାଶ୍ରୀ ।

ଜଗୁଦାସଙ୍କୁ ଗାଆଁର ୱାର୍ଡମେମ୍ବର କହିଲେ-- "ମଧୁବାବୁ ପେନ୍‌ସନ୍ ଯୋଜନାରେ ଆପଣ ଦୁହେଁ ସାମିଲ ହୁଅନ୍ତୁ । ଦରଖାସ୍ତ କରନ୍ତୁ । ମୁଁ କରେଇ ଆଣିବି ।" ଉତ୍ତରରେ-- ନାହିଁ, ସୂଚାଇଲେ ଜଗୁଦାସ । ଉମାଦେବୀ କହିଲେ-- "ଆମ ପିଲାଏ ଆମକୁ ଭଲରେ ରଖିଛନ୍ତି । ପେନ୍‌ସନ୍ ଧନରେ ଫରଚା ଚଳଣି ଦରକାର ନାହିଁ, ପୁଅ ।"

ଚାଷବାସ ଛଡ଼ା ବିଜୟକୁ ଗୁଡ଼ରନ୍ଧା ପାଇଟି ଜଣା । ପ୍ରତି ଶୀତଋତୁରେ ଧାନକଟା ସାରି ସେ ପାଖାପାଖି ଦେଢ଼ମାସ କାଳ ରହିଯାଏ ସଙ୍ଗାତ ଘର ଗାଆଁରେ । ବଡ଼ମ୍ବାରେ ତା'ର ସଙ୍ଗାତ ଘର । ଗୁଡ଼ରନ୍ଧା, ସୋରିଷ, ଅଦା, ହଳଦୀ, ଅମଳ କାମରେ ସହାୟତା କରେ । ଭଲ ଆୟ । ସେଥିରେ ବର୍ଷକର ଲୁଗା, ଗାମୁଛା, ପାରିଶୁଆ, ଚଦର ଆଦି ଚିଗିରିଆରୁ ସେ କିଣିଆଣେ । ବର୍ଷକର ମସଲା, ଗୁଡ଼ ଆଉ କନ୍ଦ ଆଣି ଘରେ ସାଇତେ । ଭଲ ଗୁଡ଼ କାରିଗର ଭାବେ ବିଜୟର ସେ ଗାଆଁରେ ସୁନାମ ରହିଛି ।

ଚାଷରେ ଟ୍ରେନିଂ ନେଇଛି ବିଜୟ । ସେ ବୁଝିଛି

ଅଣଧାନ ଚାଷରେ ଭଲ ଲାଭ। ଆଗେ ସେ ଗଡ଼ିଆରୁ କୁମ୍ଭିମାରି ପାଣି ଉଠାଉଥିଲା। ଏବେ ଉଠା ଜଳସେଚନ ଯୋଗେ କାଣୀ ନଈରୁ ପାଣି ଆସୁଛି। ସୁଇଚ୍ ଟିପିଲେ ବିଲରେ ପାଣି ମାଡୁଛି। ବାଡ଼ିକୁ ପାଣି ଆସୁଛି ମୋଟର ଶକ୍ତିରେ।

ପୁଅ-ବୋହୂଙ୍କ ମେହନତିର ସୁଫଳରେ ସାରା ପରିବାର ଚଳୁଛି। ବାରି-ବାରଣ୍ଡାରେ ନହରପହର ହୋଇ ଗୋରୁଗାଇ, ବତକ ଆଉ ପିଲାଦୁହିଁଙ୍କୁ ଜଗିଥାଆନ୍ତି ବୁଢ଼ାବୁଢ଼ୀ। ବର୍ଷା ଚାରିମାସକ ସେମାନେ ତଳକୁ ଓହ୍ଲାନ୍ତି ନାହିଁ। ଦେବତା ପରି ଭୋଗ ପାଇ କୁଟୀର ଶିଳ୍ପରେ ମନ ଦିଅନ୍ତି। ହେଂସ-ମସିଣା ବୁଣନ୍ତି।

ଆର ସାହିର ଦାମ ରଥ ଓ ତାଙ୍କ ସ୍ତ୍ରୀ-- ଦୁହେଁ ସରକାରୀ ଚାକିରି କରନ୍ତି। ସେମାନଙ୍କର ଝିଅଟିଏ। ଦୁହେଁ ଆସି ଉମାଦେବୀଙ୍କୁ ବିନତି କଲେ।

ଦାମ- "ବଡ଼ମାଆ, ତମ ନାତିନାତୁଣୀଙ୍କ ସାଙ୍ଗେ ମୋ ଝିଅ ଖେଳୁ। ଦିନ ଦଶରୁ ପାଞ୍ଚଟା ଯାଏଁ ରହୁ। ଆଉ କାହା ପାଖରେ ଛାଡ଼ିବାକୁ ମନ ବଳୁନି।"

ଦାମ ରଥଙ୍କ ସ୍ତ୍ରୀ ମଧ୍ୟ ନେହୁରା ହେଲେ। ଘରେ ସମସ୍ତଙ୍କ ସଙ୍ଗେ ଆଲୋଚନା କରି ଉମାଦେବୀ "ହଁ " ଭରିଲେ। ମାସକୁ ମାସ ପିଠାମିଠା ଫଳମୂଳ ଧରି ରଥଘର ବୋହୂ ଆସନ୍ତି। ବଡ଼ମାଆ କାନିରେ ତିନିଶହ ଟଙ୍କା ବାନ୍ଧି ଦିଅନ୍ତି ଅତି ବିନୟରେ।

ବୋହୂ-- "ବଡ଼ମାଆ, ତମ ଯୋଗୁ ମୋ ଚାକିରି ରହିଛି। ତମ ପାଖରେ ମୋ' ଝିଅ ଭଲରେ ରହିଛି। ମୁଁ ନିଶ୍ଚିନ୍ତରେ ସରକାରଙ୍କ ଅଫିସରେ ଖଟୁଛି। "

ଉଭୟ ପରିବାର ଭିତରେ ଉତ୍ତମ ବୁଝାମଣା ଥିବା ଭିତରେ ଏଇ ଲୋକନାଥଟା ଖଳ ପୂରାଉଛି। ରଥଘର ଝିଅକୁ ଚାହିଁ ଉମାଦେବୀଙ୍କୁ କୁଆଡ଼େ କହୁଛି -- "ଖେଞ୍ଚ, ଖେଞ୍ଚ, ଖେଞ୍ଚ।"

ପିଲାଟା ତ ଖାଉଚି, ପିଉଚି, ଖେଳୁଛି ଆଉ ଶୋଉଛି। ତିନିଟା ପିଲା ସାଙ୍ଗସୁଙ୍ଗା ହୋଇ ଭଲରେ ରହୁଛନ୍ତି। ସବୁ ଠିକ୍ ଚାଲିଛି। ଆଛା, ସେ ପିଲାଟାକୁ କାହିଁକି କିଏ ଖେଞ୍ଚିବ? ଖେଞ୍ଚିବାଟା ତ ଭଲକଥା ନୁହେଁ। ଉମାଦେବୀ ଗରଗର ହେଲେ। ରଥଘର ବୋହୂକୁ ବି କହିଲେ।

"ଆରେ, ଲୋକନାଥଟା ଭଲପିଲା। ସହରରେ ଟ୍ରେନିଂ ନଉଛି। ମୁଣ୍ଡ ବିଗାଡୁଛି କାହିଁକି ?" ଖୋଳତାଡ଼ କଲାରୁ ଜଣାଗଲା ଭିନ୍ନକଥା। ଲୋକନାଥ ଉମାଦେବୀଙ୍କ କାମକୁ ପ୍ରଶଂସା କରୁଛି। କହୁଛି- କ୍ରେଚ୍, କ୍ରେଚ୍, କ୍ରେଚ୍ (Creeh) ତା'ମାନେ ଶିଶୁଘର। ବାପମାଆ ନିଜନିଜ କାମରେ ବାହାରିଗଲେ, ଛୋଟପିଲା ଯେଉଁଠି ଆନନ୍ଦରେ ରହେ, ତାକୁ କୁହାଯାଏ କ୍ରେଚ୍; ଉମାଦେବୀଙ୍କର ବୟସ ଅଧିକ ହେଲାଣି। ତାଙ୍କ କାନକୁ କ୍ରେଚଟା ଖେଞ୍ଚ୍ ଖେଞ୍ଚ୍ ଶୁଭୁଛି। ହସିହସି ଗଡ଼ିଗଲେ କେତେକ।

ଏବେ ପୁଣି ବିରାଜ ଆସି ଧାରାଶ୍ରୀକୁ ତୀର୍ଥ ଯିବାପାଇଁ କହୁଛି। "ଆଲୋ, ଧାରା, ଶୁଣ ତୁ ଧାର୍ମିକ ଲୋକ। କାମିକା ଆଉ ଚଉଆଖିଆ। ତୁ ସାଙ୍ଗରେ ଥିଲେ ବଳ। ସମସ୍ତଙ୍କୁ ସାଆପକ୍ଷ ହେବୁ। ତୀର୍ଥ ଦେଖିବୁ। ସାଧୁସନ୍ଥଙ୍କୁ ପୂଜିବୁ।"

କିଛି ସମୟ ଗୁମ୍ ମାରିଲେ ଧାରାଶ୍ରୀ। ତା'ପରେ କହିଲେ, "ମୋର ତୀର୍ଥ ଯିବା ବୟସ ହୋଇନି। ଧର୍ମ ତ ମୋ' ପାଇଁ ବାଡ଼ି ବାଇଗଣ; ପୋଥି ବାଇଗଣ ନୁହେଁ। ମୋ' ହାତକୁ ଅନେଇ ବସିଛନ୍ତି ଦେବତାସମାନ ଶାଶୂ-ଶଶୁର ଆଉ ବାଳୁତ ତିନିଠାକୁର। ଦୁଇଟି ସୁଭଦ୍ରା ଓ

ଗୋଟିଏ ଗୋପାଳ। ଗୁହାଳରେ ଦଶମୁଣ୍ଡର ଚାଳିଶ ଗୋଡ଼। ଗୁହାଳତୀର୍ଥ ହେଲା ଚାଷବଳ ଆଉ ଅର୍ଥବଳର ମଂଜି। ଯୁଆଡ଼େ ନ ଚାହିଁବି, ସିଆଡୁ ରାବଣ-କଂସାସୁରମାନେ ଭିତରକୁ ପଶିଆସିବେ।"

ମୁହଁ ଛିଞ୍ଚାଡ଼ିଲେ ବିରଜାନାନୀ। ଧାରାଶ୍ରୀ ହସିହସି କହିଲେ, "ମନ ଖରାପ କରନ୍ତୁନି। ଭଲରେ ଯାଇ ତୀର୍ଥ କରନ୍ତୁ। ସୁନା ଜିନିଷ ନାଇ ପିନ୍ଧି ଯିବେନି। ବ୍ୟାଙ୍କ୍ ଲକର୍‌ରେ ରଖିକରି ଯିବେ। ଏବେ ଚାରିଆଡ଼େ ଲୁଟେରା।"

ବିରଜା-- "ତୋ'ଉପଦେଶ ତୋ'ପାଖରେ ଥାଉ। ଗଙ୍ଗା-ସାଗର-ସଙ୍ଗମରେ ବୁଡ଼ ଭାଗ୍ୟରେ ଥିଲେ ମିଳେ। ତୁ ହେଲୁ କୂଅବେଙ୍ଗ। ମୁନିଋଷିଙ୍କୁ ତୁ କାହୁଁ ପାଇବୁ?"

ଧାରାଶ୍ରୀ-- "ନାନୀ, ଟିଭିରେ ଦେଖଉଚି କଳକାରଖାନା, ଡାକ୍ତରଖାନା ଆଉ ନଗରର ମଇଳା ପଶୁଚି ଗଙ୍ଗାନଈରେ। ପାଣି ଦୂଷିତ ହେଉଛି। ଦୂଷିତଜଳରେ ମୁଣ୍ଡ ବୁଡ଼ାଇବି କାହିଁକି ? ବରଂ ଭଲ ଆମ ଠାକୁରଗଡ଼ିଆ ପାଣି। ଜଳ କଢ଼ା ଯାଇଛି। ପଙ୍କ ଉଦ୍ଧାର ବି ହୋଇଛି। ଏବେ ପୋଖରୀରେ ବାଲିଝରା ପାଣି। ଏଇ ମୋର ଗଙ୍ଗା- ଗୋଦାବରୀ- କୃଷ୍ଣା-କାବେରୀ।

ମୋ'ଦେହରେ ଅଛନ୍ତି ସାତଋଷି। ଦୁଇଆଖି, ଦୁଇକାନ, ଦୁଇନାକ, ଦୁଇନାକପୁଡ଼ା ଆଉ ମୁଖ-- ଏଇ ସାତ ହେଲେ ସପ୍ତଋଷି। ଏମାନଙ୍କ ଦାନରେ ଚଳୁଛି। ଏମାନଙ୍କୁ ସେବିବି। ଆମ ବାଡ଼ିର ଆମ୍ବ-ତେନ୍ତୁଳି ଗଛ ମୋ'ପାଇଁ ବୋଧିଦ୍ରୁମ।"

ବିରଜା-- "ହୁଁ.......ଭାରି ଶାସ୍ତ୍ର ଜାଣିଲା ବାଲାଟା...!"

ଅଗଣାରେ ତିନିପିଲା ଠେଲାପେଲା ହେଉ ହେଉ ଜଣେ ପଡ଼ିଗଲା। "ଭେଁ..... ଭାଇ.... ମୋତେ.... ପେଲି.... ଦେ.... ଲା।" ଧାରାଶ୍ରୀ ପିଲାଙ୍କ ପାଖକୁ ଦଉଡ଼ିଗଲେ। ବିରଜାନାନୀ ଉଦ୍ଦେଶ୍ୟରେ କହିଲେ--

"ବସନ୍ତୁ ନାନୀ.... ମୁଁ ପିଲାଙ୍କ କଥା ବୁଝୁଛି....।"

ବିରଜା ଗାରୁ ଗାରୁ ହୋଇ କହିଲେ-- "ବେଙ୍ଗକୁ ଘିଅ ରୁଚେନା। ତୋ'ପରି ଜୀବକୁ ପାଚିଲା ପାଟକପୁରା କଦଳୀ ଭଲ ଲାଗିବନି। ଆସୁଛି।" କହି ପୁଣି ବସିଲେ।

ଧାରାଶ୍ରୀ ବୁଝାଇଲେ-- "ଶୁଣ ନାନୀ, ମୋ'ଓଠରେ ଜପ। ମନରେ ତପ। କଥାକୁହା ଦେବାଦେବୀଙ୍କୁ ହତାଦର କରି କାଠପଥର ଦିଅଁ ପାଖକୁ ଯାଇପାରିବିନି। ଏଇ ଘରବାଡ଼ି, ଗୋରୁଗାଈ-ଏଇସବୁ ମୋର ସ୍ୱରାଜ୍ୟ। କର୍ମସଂସ୍ଥାନ। ବୃନ୍ଦାବନ। ବଂଶୀ ବାଜୁଛି ଏଇ ଗୃହକାନନରେ। ମୋ'ମନ ବୃନ୍ଦାବନରେ।"

ବଡ଼ ତୋଡ଼ରେ ଉଠିଯାଉଥିବା ବିରଜା ନଥ୍

କରି ବସିପଡ଼ିଲେ। କହିଲେ- "ସତକଥା, ଏଇ ତୋ'ର ବୃନ୍ଦାବନ, କାଶୀ, ବାରାଣସୀ।" ଧାରାଶ୍ରୀ ସେଥିରେ ଯୋଡ଼ିଲେ- "ଏଇ ଦେହେ ବିରାଜିତ ଋଷି ରାଶି ରାଶି।"

ଉଭୟେ ଗୁଣୁ ଗୁଣୁ ହେଲେ--

ଏଇ ମନ ବୃନ୍ଦାବନ କାଶୀ ବାରାଣସୀ
ଏଇ ଦେହେ ବିରାଜିତ ଋଷି ରାଶି ରାଶି।

*ସେକ୍ଟର ୨/୪୨୬, ନୀଳାଦ୍ରିବିହାର, ଭୁବନେଶ୍ୱର-୨୧*

---

# କୁନୁକୁନାର ନୂଆ ସାଙ୍ଗ

ଡକ୍ଟର କୃତ୍ତିବାସ ନାୟକ

କୁନୁକୁନା ନାମରେ ପିଲାଟିଏ ଥାଏ। ତୃତୀୟ ଶ୍ରେଣୀରେ ପାଠ ପଢ଼େ। ବହିରେ ଥିବା ପାଠକୁ ଥରେ ପଢ଼ିଦେଲେ ସେ ମନେରଖିପାରେ। ଶିକ୍ଷକମାନେ ଯାହା ପଚାରନ୍ତି, ସଙ୍ଗେ ସଙ୍ଗେ ଠିକ୍ ଉତ୍ତରଟିକୁ ସେ ଆଗ ଦେଇଦିଏ; କିନ୍ତୁ ସେ ଥିଲା ଭାରି ଚଗଲା। ଶ୍ରେଣୀରେ ସେ ଅନ୍ୟ ପିଲାମାନଙ୍କୁ ହଇରାଣ କରି ପକାଏ। କାହାର ଚୁଟିକୁ ଟାଣିଦିଏ ତ କାହାର ପେନ୍‌ସିଲକୁ ଦୂରକୁ ପକାଇଦିଏ। ବିନା କାରଣରେ ପିଲାଙ୍କୁ ଖତେଇ ହୁଏ। ସେ ଭଲ ପାଠ ପଢୁଥିବାରୁ ତା'ଦୁଷ୍ଟାମିକୁ କେହି ଧରି ରଖନ୍ତି ନାହିଁ। ଶିକ୍ଷକମାନେ ବି ତା'ଚଗଲାମିକୁ ସହି ଯାଆନ୍ତି। ଅନ୍ୟ ପିଲାମାନେ ବି ମନେ ମନେ ତାକୁ ଭଲ ପାଆନ୍ତି। କେହି ତା' ବିରୋଧରେ ଅଭିଯୋଗ କରନ୍ତି ନାହିଁ।

ଦିନେ କୁନୁକୁନା ଦେଖିଲା, ଶ୍ରେଣୀରେ ଶିକ୍ଷକ ନାହାନ୍ତି। ସେ ବାହାରକୁ ଚାଲିଯାଇ ଏଣେତେଣେ ବୁଲିଲା। ସ୍କୁଲ ଆଗରେ ଥିବା କଅଁଳ ଆମ୍ବଗଛର ସରୁ ଡାଳକୁ ଟାଣିଆଣି ଭାଙ୍ଗି ପକାଇଲା। ଦୂରରେ ଥାଇ ପ୍ରଧାନ ଶିକ୍ଷକ କୁନୁକୁନାର ଦୁଷ୍ଟାମିକୁ ଦେଖିନେଲେ। ସେ ତାକୁ ପାଖକୁ ଡାକି ଆଣିଲେ। ହଠାତ୍ ତା' ଡାହାଣ ହାତର ଗୋଟାଏ ଆଙ୍ଗୁଠିକୁ ମୋଡ଼ି ଧରିଲେ।

କୁନୁକୁନା ଉଃ- ଆଃ- ଚିତ୍କାର କରି ଛାଟିପିଟି ହେଲା। ପ୍ରଧାନ ଶିକ୍ଷକ ପଚାରିଲେ, "ଏବେ ତୋତେ କେମିତି ଲାଗୁଛି ?"

କାନ୍ଦ କାନ୍ଦ ହୋଇ ସେ କହିଲା, "ଭାରି କାଟୁଛି ସାର୍। ମୋ ଆଙ୍ଗୁଠିକୁ ଛାଡ଼ି ଦିଅନ୍ତୁ।"

ପ୍ରଧାନ ଶିକ୍ଷକ କୁନୁକୁନାର କାନ୍ଦୁରା ମୁହଁକୁ ଚାହିଁ କହିଲେ, "ମୁଁ ତ ଏବେ କେବଳ ତୋର ଆଙ୍ଗୁଠିକୁ ମୋଡ଼ି ଧରିଛି। ଗଛ ଡାଳକୁ ଭାଙ୍ଗିବା ଭଳି ତୋ' ଆଙ୍ଗୁଳିକୁ ତ ଭାଙ୍ଗିନାହିଁ। ଏତିକିରେ ତୁ କାନ୍ଦୁଛୁ ?"

ଏଥର କୁନୁକୁନା ଅସଲ କଥାଟିକୁ ବୁଝିଗଲା। ସେ ଆମ୍ବଗଛର କଅଁଳ ଡାଳକୁ ଭାଙ୍ଗି ଦେଇଥିଲା। ସେଇଥିପାଇଁ ପ୍ରଧାନ ଶିକ୍ଷକ ତାକୁ ଏ ଦଣ୍ଡ ଦେଉଛନ୍ତି। ତେଣୁ ସେ କାନ୍ଦ କାନ୍ଦ ହୋଇ କହିଲା, "ସାର୍ ! ଆଉ କେବେ ମୁଁ ସେ ଗଛର ଡାଳକୁ ଭାଙ୍ଗିବି ନାହିଁ।"

ପ୍ରଧାନ ଶିକ୍ଷକ ତା' ଆଙ୍ଗୁଳିକୁ ଛାଡ଼ିଦେଇ କହିଲେ, "ତୋ ଆଙ୍ଗୁଳିକୁ ଟିକେ ମୋଡ଼ି ଧରିବାରୁ ତୋତେ ଯେମିତି କଷ୍ଟ ହେଲା, ଠିକ୍ ସେମିତି ଗଛର ଡାଳକୁ ମୋଡ଼ି ଧରିଲେ ତାକୁ ବି କଷ୍ଟ ହୁଏ। ଆଉ ତା'ର ଡାଳକୁ ଭାଙ୍ଗିଦେଲେ, କେତେ କଷ୍ଟ ହେଉଥିବ, ସେ କଥାକୁ ଏବେ ଅନୁମାନ କର।"

କୁନୁକୁନା ଦୁଇହାତ ଯୋଡ଼ି କହିଲା, "ସାର୍ !

ବହୁତ କଷ୍ଟ ହେଇଥିବ । ଗଛମାନେ ତ କେବେ କଥା କୁହନ୍ତି ନାହିଁ । ତେଣୁ ମୁଁ ଏକଥା ଜାଣି ନ ଥିଲି । ମୋ ଭୁଲ ପାଇଁ ମୋତେ କ୍ଷମା କରି ଦିଅନ୍ତୁ ।''

ପ୍ରଧାନ ଶିକ୍ଷକ ବୁଝେଇ କହିଲେ- ''ଠିକ୍ ଅଛି । ତୁ ଏବେ ତୋର ଭୁଲ୍ ବୁଝି ପାରିଛୁ । ଏଥିପାଇଁ ମୋତେ କ୍ଷମା ମାଗିଲେ ଚଳିବ ନାହିଁ । ଯେଉଁ ଗଛର ଡାଳକୁ ତୁ ଭାଙ୍ଗି ତାକୁ କଷ୍ଟ ଦେଇଛୁ, ଯା, ସେହି ଗଛ ମୂଳେ ଠିଆ ହେଇ ସେ ଗଛକୁ କ୍ଷମା ମାଗିବୁ । ସେ ତୋତେ କ୍ଷମା ଦେଲେ, ତା' ମୂଳରେ ପାଣି ଢାଳି ତା' କଷ୍ଟକୁ ଦୂର୍ କରିବୁ ।''

କୁନୁକୁନା କହିଲା- ''ସାର୍ ! ଗଛ ତ କଥା କହିପାରେନି, ସେ ପୁଣି କେମିତି ମୋତେ କ୍ଷମା ଦେବ?''

ପ୍ରଧାନ ଶିକ୍ଷକ କହିଲେ- ''ଗଛ ଆମର ସବୁ କଥାକୁ ବୁଝିପାରେ । ଏପରିକି ଆମର ମନ କଥାକୁ ମଧ୍ୟ ବୁଝିନେଇ ଥାଏ । ଆମେ ତାକୁ ଭଲପାଇଲେ, ତାକୁ ବି ସେ ଅନୁଭବ କରିପାରେ । କେବଳ ସେତିକି ନୁହେଁ, ସେ ଆମର ମନକଥାକୁ ବୁଝିପାରି ଆମକୁ ଆଶୀର୍ବାଦ ମଧ୍ୟ ଦେଇଥାଏ । କେହି ଯଦି ଗଛର ଡାଳପତ୍ରକୁ ଛିଣ୍ଡେଇବାକୁ ତା' ପାଖକୁ ଯାଏ, ତେବେ ସେ ତା'ଠାରୁ ଟିକେ ଦୂରକୁ ତା' ପତ୍ରକୁ ଘୁଞ୍ଚେଇଦିଏ । କେହି ତା' ମୂଳରେ ନିଆଁ ଜାଳିଲେ, ସେ ବିକଳ ହୋଇ ତା' ଡାଳପତ୍ରକୁ ରକ୍ଷା କରିବା ପାଇଁ ଏପଟସେପଟ କରେ । କିନ୍ତୁ ଭଗବାନ ତାକୁ କଥା କହିବା ଶକ୍ତି ଦେଇ ନ ଥିବାରୁ, ସେ କାହାରିକୁ କିଛି କହିପାରେ ନାହିଁ କି ଚିତ୍କାର କରି କାନ୍ଦି ପାରେନାହିଁ । ଆମେ ଦେଉଥିବା ଯନ୍ତ୍ରଣାକୁ ସେ ମଥାପାତି ସହିନିଏ । ଯେଉଁମାନେ ନିଷ୍ଠୁର ହୋଇ ତାକୁ କଷ୍ଟ ଦିଅନ୍ତି, ଗଛ ତାଙ୍କୁ ଅଭିଶାପ ଦେଇଥାଏ । ସେ ତାର ଡାଳପତ୍ରକୁ ହଲେଇ ନିଜର ମନକଥା ମଣିଷଙ୍କୁ ଜଣାଏ । ବୁଝିବା ଲୋକ ସେ କଥାକୁ ବୁଝିପାରେ । ମଣିଷ ଓ ପଶୁପକ୍ଷୀ, ଏମିତିକି ସମଗ୍ର ଜୀବଜଗତକୁ ଗଛ ବଞ୍ଚେଇବାରେ ସାହାଯ୍ୟ କରିଥାଏ । ସେ କେବଳ ଦେଇ ଜାଣେ, କାହାରିଠାରୁ କେବେ କିଛି ନିଏନାହିଁ । ସେଇଥିପାଇଁ ଆମେ ଗଛକୁ ଦେବତା ବୋଲି ମନେକରି ପୂଜା କରିଥାଉ । ବଉଳ ଅମାବାସ୍ୟାରେ ସଞ୍ଜବେଳେ ଆମ୍ବଗଛ ମୂଳେ ଧୂପଦୀପ ଦେଇ ଗଇଁଠା ଭୋଗ ଦିଆଯାଏ । ଖାଲି ସେତିକି ନୁହେଁ, ବରଗଛ ଓସ୍ତଗଛକୁ କେତେଜଣ ଲୋକ ବାହାଘର କରାଇ ଧର୍ମ ଅର୍ଜନ କରନ୍ତି । ଗଛ ଭଳି ଭଲ ସାଥୀ ଆଉ କିଏ ହେଇପାରେ? ତୁ ଯା'-- ସେ ଗଛକୁ ତୋ' ଭୁଲ୍ ପାଇଁ କ୍ଷମା ମାଗିବୁ । ସେ ନିଶ୍ଚୟ ତୋତେ କ୍ଷମା ଦେଇଦେବ । ସେ ତା'ର ପତ୍ରକୁ ହଲେଇ କ୍ଷମା ଦେଲ ବୋଲି ଜଣେଇଦେବ ।''

ପ୍ରଧାନ ଶିକ୍ଷକଙ୍କଠାରୁ ଗଛ ବିଷୟରେ ସବୁ କଥା ଶୁଣିସାରି କୁନୁକୁନା ସିଧା ଦୌଡ଼ିଲା ଆମ୍ବଗଛ ପାଖକୁ । ପାଖରେ ଥୁଆ ହୋଇଥିବା ବାଲଟିରୁ ମଗେ ପାଣି ନେଇ ଆଗ ସେ ଆମ୍ବଗଛ ମୂଳରେ ଢାଳିଦେଲା । ତା'ପରେ ସେ ନିଜର ଦୁଇହାତକୁ ଯୋଡ଼ି ସେହି ଗଛମୂଳେ ଠିଆ ହେଇ କହିଲା, ''ହେ ବୃକ୍ଷଦେବତା, ମୁଁ ଛୋଟପିଲା । ନ ଜାଣି ନ ବୁଝି ବଡ଼ ଭୁଲ୍ କରିଦେଇଛି । ତମର ଡାଳକୁ ମୁଁ ଭାଙ୍ଗିଦେଇ ତମକୁ ବହୁତ କଷ୍ଟ ଦେଇଛି । ମୋର ଅପରାଧକୁ କ୍ଷମା କରିଦିଅ । ଆଉ କୌଣସି ଗଛର ଡାଳକୁ କେବେ ବି ମୁଁ ଭାଙ୍ଗିବି ନାହିଁ ।'' ତା' ପରେ ସେ ଶ୍ରେଣୀର ପିଲାମାନେ ଯେମିତି କାନ ଧରି ଉଠାବସା ହୁଅନ୍ତି, ସେହିପରି ନିଜର ଦୁଇକାନକୁ

ଧରି କେତେଥର ଉଠାବସା ହେଲା । କିଛି ସମୟ ପରେ ସେ ଗଛକୁ ନିରୀକ୍ଷଣ କରି ଦେଖିଲା-- ଗଛର କେତେଟା ପତ୍ର ହଲି ଫଡ଼୍‌ଫଡ଼୍ ହେଉଛି । କୁନୁକୁନା ଅନୁଭବ କଲା, ପ୍ରଧାନ ଶିକ୍ଷକ ଯେମିତି କହିଥିଲେ, ଠିକ୍ ସେଇମିତି ଗଛ ତା' ପତ୍ରକୁ ହଲେଇ ତାକୁ କ୍ଷମା କରିଦେଇଛି ବୋଲି ଜଣାଉଛି । ଧୀର ପବନରେ ତାର ସରୁ ଡାଳ ନଇଁ ଆସି କୁନୁକୁନା ମୁଣ୍ଡକୁ ଛୁଇଁଦେଲା । କୁନୁକୁନାର ଦେହମନ ପୁଲକିତ ହୋଇଗଲା । ସେ ଗଛକୁ କୁଣ୍ଢେଇ ପକାଇଲା । ତା' ଆଖିରୁ ଧାର ଧାର ଲୁହ ବୋହି ଚାଲିଲା । ସେ ଅନୁଭବ କଲା, ଗଛ ଦେହରେ ଯେମିତି ଧକ୍‌ଧକ୍ ହୃଦ୍‌ସ୍ପନ୍ଦନ ହେଉଛି ।

ଦୂରରୁ ଥାଇ ପ୍ରଧାନ ଶିକ୍ଷକ ଚଗଲା କୁନୁକୁନାର ଏସବୁ କାମ ଲକ୍ଷ୍ୟ କରୁଥିଲେ । ତାଙ୍କୁ ଭାରି ମଜା ଲାଗୁଥାଏ । ସେ ଅନ୍ୟ ଶିକ୍ଷକମାନଙ୍କୁ ଡାକି ଘଟଣାଟିକୁ ଦେଖାଇଦେଲେ ।

କିଛି ସମୟ ପରେ ପ୍ରଧାନ ଶିକ୍ଷକଙ୍କ ସହିତ ଅନ୍ୟ ଶିକ୍ଷକମାନେ କୁନୁକୁନା ପାଖକୁ ଚାଲିଲେ । ସେତେବେଳ ପର୍ଯ୍ୟନ୍ତ କୁନୁକୁନା ଆଖି ବୁଜି ଆମ୍ବଗଛକୁ କୁଣ୍ଢେଇ ଚୁପ୍‌ଚାପ୍ ଠିଆହେଇ ରହିଥାଏ ।

ପ୍ରଧାନ ଶିକ୍ଷକଙ୍କ ଡାକରେ କୁନୁକୁନା ଆଖି ଖୋଲିଲା । ପ୍ରଧାନ ଶିକ୍ଷକ ତାକୁ କୋଳେଇନେଇ କହିଲେ, "କୁନୁକୁନା, ଆଜିଯାଏ ତୁ ଗୋଟେ ଚଗଲା ପିଲା ଭାବରେ ପରିଚିତ ହେଉଥିଲୁ । କିନ୍ତୁ ଆଜିଠାରୁ ତୁ ଆମ ସ୍କୁଲର ଜଣେ ବୁଦ୍ଧିମାନ ଆଉ ଚାଲାକ ପିଲା ଭାବରେ ପରିଚିତ ହେଲୁ । ତୁ ଆଜିଠାରୁ ଆମ ସ୍କୁଲ ପରିସରରେ ଥିବା ସମସ୍ତ ଗଛର ରକ୍ଷକ ହେବୁ । ଦେଖିବୁ, ମଣିଷପିଲା ସାଙ୍ଗମାନଙ୍କ ଅପେକ୍ଷା ଗଛମାନେ ତୋର ଭଲ ସାଙ୍ଗ ହେଇଯିବେ । ତୁ ତାଙ୍କୁ ଯେତିକି ଭଲପାଇବୁ, ସେମାନେ ତୋତେ ତାଠାରୁ ବହୁତ ଅଧିକ ଭଲ ପାଇବେ । ଗଛମାନଙ୍କର ସେବା କରିପାରିଲେ, ସେମାନେ କାହା ପାଇଁ ମାଆ ତ କାହା ପାଇଁ ଭାଇ, ପୁଣି ଛୋଟ ପିଲାମାନଙ୍କ ପାଇଁ ସେମାନେ ଅଜା ହୋଇ ତାଙ୍କୁ ସ୍ନେହ ଦେଇ ଶ୍ରଦ୍ଧା କରିବେ । ତମ ଭଳି ପିଲାମାନଙ୍କ ପାଇଁ ତ ସେ ହେବେ ସବୁଠାରୁ ଭଲ ସାଙ୍ଗ ।"

ପ୍ରଧାନ ଶିକ୍ଷକଙ୍କ କଥା କୁନୁକୁନାକୁ ଭାରି ଭଲ ଲାଗିଲା । ସେ କହିଲା, "ସାର୍, ଆଜିଠାରୁ ମୁଁ ଆଉ ମୋର ସାଙ୍ଗମାନେ ମିଶି ବିଭିନ୍ନ ପ୍ରକାର ଗଛର ଚାରା ଲଗାଇବୁ । ତାଙ୍କୁ ବଡ଼ କରିବା ପାଇଁ ସବୁ ପ୍ରକାର ଯତ୍ନ ନେବୁ ।"

ସତକୁ ସତ ଚଗଲା କୁନୁକୁନା ତାର ସାଙ୍ଗମାନଙ୍କୁ ଗଛ କଥା କହି ଏକଜୁଟ କରି ପକାଇଲା-- କେହି ଯେମିତି କୌଣସି ଗଛର ପତ୍ରଟିଏ



ବି ଛିଣ୍ଡେଇବେ ନାହିଁ, ସେକଥା ସମସ୍ତଙ୍କୁ କହିଦେଲା । ସବୁ ଗଛକୁ ସ୍କୁଲରେ ଥିବା ପିଲାଙ୍କ ନାମ ଅନୁସାରେ ଗୋଟିଏ ଗୋଟିଏ ନାଆଁ ଦେଇଦେଲା । ପ୍ରତ୍ୟେକ ପିଲା ଗୋଟିଏ ଗୋଟିଏ ଗଛର କେମିତି ଯତ୍ନ ନେଇ ବଢ଼େଇବେ, ସେକଥା ପିଲାମାନଙ୍କୁ ବୁଝେଇଦେଲା । ଅନ୍ୟ ସାଙ୍ଗମାନେ ତାକୁ ଏ କାମରେ ସହଯୋଗ କଲେ । ଅଳ୍ପ କେତେ ଦିନ ଭିତରେ ସ୍କୁଲ ପରିସରରେ ଥିବା ଗଛଲତା ସବୁଜିମାରେ ଭରିଗଲା ।

ସେ ବର୍ଷ ସ୍କୁଲର ବାର୍ଷିକ ଉତ୍ସବରେ କୁନୁକୁନା ସହିତ ତାର ସାଙ୍ଗମାନଙ୍କୁ ଭଲ କାମ ପାଇଁ ମୁଖ୍ୟ ଅତିଥି ପୁରସ୍କାର ଦେଲେ । କୁନୁକୁନାର ଭଲ କାମ ପାଇଁ ତାକୁ ଶ୍ରେଷ୍ଠଛାତ୍ର ପୁରସ୍କାର ମିଳିଲା ।

ପ୍ରଧାନ ଶିକ୍ଷକ ସଭାରେ କହିଲେ--''ଏହିଭଳି ଗଛମାନଙ୍କ ପ୍ରତି ଶ୍ରଦ୍ଧା ରଖିଲେ, ତମେ ବି ଦିନେ ସରକାରଙ୍କ 'ପରିବେଶ ବନ୍ଧୁ' ପୁରସ୍କାର ମୁଖ୍ୟମନ୍ତ୍ରୀଙ୍କ ହାତରୁ ପାଇପାରିବ ।

ସଭା ଶେଷରେ ପିଲାମାନଙ୍କର ଆନନ୍ଦ କହିଲେ ନ ସରେ ।

*୬ଜି/ ୧୪୬୩, ସେକ୍ଟର- ୧୦, ମର୍କତ ନଗର, କଟକ- ୧୪*

**ମହତ କର୍ମରେ ଗର୍ବ ଅହଙ୍କାର**
**ଅଭିମାନ ସ୍ଥାନ ନାହିଁ**
**ଅଙ୍ଗୀକାରବଦ୍ଧ ନୈତିକ ଜୀବନ**
**ନିଷ୍ଠାରେ ସଫଳ ଥାଇ ।**

--ଡକ୍ଟର କୃତ୍ତିବାସ ନାୟକ, *୬-ଜି/୧୪୬୩, ସେକ୍ଟର-୧୦, ମର୍କତ ନଗର, କଟକ-୧୪*




ଶ୍ରୀ ଜ୍ୟୋତିରଞ୍ଜନ ବିଶ୍ୱାଳ

୧ । ଅଷ୍ଟାଦଶ ସେଫ୍ଟି ଅଲମ୍ପିକସ୍ (18th Safety Olympics) କେଉଁଠାରେ ଅନୁଷ୍ଠିତ ହୋଇଥିଲା ?

୨ । 'Saga of Struggle and Sacrifice' ପୁସ୍ତକର ରଚୟିତା କିଏ ?

୩ । କେଉଁ ଭାରତୀୟ ବ୍ୟାଙ୍କ୍ ପ୍ରଥମ କରି 'ଚେକ୍' (Cheque)ର ପ୍ରଚଳନ ଆରମ୍ଭ କରିଥିଲେ ?

୪ । ଫତେହପୁର ସିକ୍ରିଠାରେ ଅବସ୍ଥିତ ଇବାଦତ୍‌ଖାନାର ନିର୍ମାତା କିଏ ?

୫ । କିଏ ଭାରତର ବିଲ୍ ଗେଟସ୍ (India's Bill Gates) ଭାବରେ ପରିଚିତ ?

୬ । ଦ୍ରୁତତମ ସନ୍ତରଣକାରୀ ପକ୍ଷୀର ନାମ କ'ଣ ?

୭ । TINର ପୂର୍ଣ୍ଣରୂପଟି କ'ଣ ?

୮ । 'ଚିତ୍ରକୁଟ'କେଉଁ ରାଜ୍ୟର ଏକ ଜିଲ୍ଲାର ନାମ ?

୯ । ବିଶ୍ୱ କ୍ଷୀର ଦିବସ (World Milk Day) କେବେ ପାଳନ କରାଯାଇଥାଏ ?

୧୦ । ସାହିତ୍ୟରେ ପ୍ରଥମେ ନୋବେଲ୍ ପୁରସ୍କାର ପାଇଥିବା ବ୍ୟକ୍ତିଙ୍କ ନାମ କ'ଣ ?

(ଉତ୍ତର ୨୮ ପୃଷ୍ଠାରେ)

# ମନେ ରଖିଥିବ ଦି'ପଦ !

ଶ୍ରୀ ରମେଶ ଚନ୍ଦ୍ର ଭଞ୍ଜ

ବଡ଼ ତେଲାଟିଏ ଫୋପାଡୁ ଫୋପାଡୁ
ଖସିଗଲା ଯଦି ହାତରୁ,
ନାଉରୀ ବାପୁଡ଼ା ନାଆ ବାହୁ ବାହୁ
ହାତ ଖସିଗଲା କାତରୁ,
ଯାହା ହେବା କଥା ହୋଇବ,
ଅଡୁଆ ଭିତରେ ମୁସ୍କିଲ୍ ପଶିଲେ
କିଏ ନେଇ ଆଣି ଥୋଇବ !

ରନ୍ଧା ହାଣ୍ଡି ଫଙ୍ଗ ଖସିଗଲା ଯଦି
ପେଜ ଗାଳୁ ଗାଳୁ ଭାତରୁ,
ଦେଖଣାହାରିଏ ଚାଲିଗଲେ ଯଦି
ନାଚ ମଝିଟାରେ ଯାତରୁ,
ଯାହା ହେବା କଥା ହୋଇବ,
ବୋଝ ଉପରକୁ ନଳିତା ବିଡ଼ାଏ
କିଏ ନେଇ ଆଣି ବୋହିବ !

ଗୋଛନ୍ଦ ଦଉଡ଼ି ଖସିଗଲା ଯଦି
ଗାଇ ଦୁହୁଁ ଦୁହୁଁ ନାତରୁ,
ମସଲା ଅରାଏ ଖସିଗଲା ଯଦି
ନୂତନ ତଳେଇ ଛାତରୁ,
ଯାହା ହେବା କଥା ହୋଇବ,
ତୁଉ ତ ମୁତୁରା ମୁଁଉ ତ ମୁତୁରା
ବିଛଣା କିଏ ସେ ଧୋଇବ !

ଫୋଟକା ଗୋଟିଏ ବାହାରିଲା ଯଦି
ଗୋଦର ଗୋଡ଼ିଆ ବାତରୁ
ଇଟା ଗୁଣ୍ଡ ଘଷି ଚିକ୍କଣ ବୋଳଟି
ଖସିଗଲା ଯଦି ଦାନ୍ତରୁ
ଯାହା ହେବା କଥା ହୋଇବ,
ଟାଙ୍ଗରା ମୁଣ୍ଡରେ କିଏ କେଉଁଠାରୁ
ନୂଆ କେଶ ଆଣି ରୋଇବ !



ଚଉଦିଗେ ଆଖି ବୁଲାଇ ଆଣିବ
କାମଟି କରିବା ଆଗରୁ,
ଆଗ, ପଛ, କଡ଼ ଦେଖ ଭଲ କରି
ସବୁଆଡୁ ସବୁ ଦିଗରୁ,
କିଛି ନ ଆସିବ ବିପଦ,
କବିତା ଛୋଟିଆ ଭାବଟି ମୋଟିଆ
ମନେରଖିଥିବ ଦି'ପଦ !

*ଶିଶୁଶ୍ରୀ ସାହିତ୍ୟ ସମିତି, ବୁଢ଼ୀ ବଗିଚା, ସାମନ୍ତରାପୁର,*
*ଖୋରଧା- ୭୫୨୦୫୫*





# ରେଡ୍ ଉଡ୍ ଫରେଷ୍ଟ ଓ ମୁର୍ ଉଡ୍ ଜାତୀୟ ସ୍ମୃତି

ଡାକ୍ତର ନିମାଇଁ ଚରଣ ପରିଜା

ଦିନେ ରବିବାର ସକାଳୁ ପୁଅର ପ୍ରସ୍ତାବ ଅନୁସାରେ କାଲିଫର୍ଣ୍ଣିଆର ମୁରଉଡ୍ ଜାତୀୟ ସ୍ମୃତିପୀଠ ଦେଖିବାକୁ ବାହାରିଗଲୁ । ଏହାକୁ ରେଡ୍‌ଉଡ୍ ଫରେଷ୍ଟ ବୋଲି ମଧ୍ୟ କୁହାଯାଏ । ସାନଫ୍ରାନସିସ୍‌କୋର ଗୋଲଡେନ୍ ଗେଟ୍ ବ୍ରିଜର ୧୨ ମାଇଲ ଉତ୍ତରକୁ ଏହା ଅବସ୍ଥିତ । ଯିବା ବାଟରେ ସାନଫ୍ରାନସିସ୍‌କୋର ଉପମହାସାଗର କୂଳେ କୂଳେ ଗାଡ଼ିରେ ଯାତ୍ରା ଆରମ୍ଭ କଲୁ । ଉପମହାସାଗର କୂଳରେ ମନୋରମ ସୌନ୍ଦର୍ଯ୍ୟ ଉପଭୋଗ କରିବା ସଂଗେ ସଂଗେ ଉପସାଗର ଉପରେ ଥିବା ପ୍ରଖ୍ୟାତ ଭାସମାନ ପୋଲ ଗୋଲଡେନ୍ ଗ୍ରେଟ୍ ବ୍ରିଜ୍ ଉପରେ ଯାତ୍ରା କରି ଆର ପଟରେ ପହଞ୍ଚିଗଲୁ । ପାହାଡ଼ି ରାସ୍ତାରେ ଉତ୍ତର ପାର୍ଶ୍ୱରେ ଅସଂଖ୍ୟ ବୃକ୍ଷରାଜି । ସ୍ଥାନେ ସ୍ଥାନେ ବସବାସ ପାଇଁ ସୁନ୍ଦର ଅଟ୍ଟାଳିକାମାନ ଠିଆ ହୋଇଥିବାରୁ ମନେହେଉଥାଏ ସବୁ ଘରଗୁଡ଼ିକ ଯେମିତି ଜଙ୍ଗଲରେ ପରିବେଷ୍ଟିତ । ଜଙ୍ଗଲ ପରିବେଷ୍ଟିତ ସସାଲିଟ୍ ସହର ଅତ୍ୟନ୍ତ ମନୋରମ ପ୍ରାକୃତିକ ପରିବେଶରେ ଅବସ୍ଥିତ । ରାସ୍ତାଗୁଡ଼ିକ ଉପରୁ ତଳକୁ ଓ ବୁଲି ବୁଲି ଉପରକୁ ଉଠିଛି । ଦୂରରୁ ଦେଖିଲେ କେବଳ ଜଙ୍ଗଲ ଆଉ ଜଙ୍ଗଲ । ତା'ଭିତରେ ଏଡ଼େ ବଡ଼ ଜାତୀୟ ବୃକ୍ଷ ଉଦ୍ୟାନ ଅଛି ବୋଲି ଭାବି ହେବନି । ଏହି ଜାତୀୟ ସ୍ମୃତିପୀଠକୁ କାଲିଫର୍ଣ୍ଣିଆ ହାଇୱେ U-S 101 ରାସ୍ତା ଦେଇ ଯିବାକୁ ହୁଏ । ସେଠାକାର ଉତ୍ତାପ ୧୫°ରୁ ୨୦° ସେ. ।

ମୁରଉଡ୍ ଜଙ୍ଗଲ ଭିତରେ ପଶିଲାବେଳକୁ ଟିକେଟ୍ କାଟି ପଶିବାକୁ ପଡ଼େ । ୧୬ ବର୍ଷରୁ ଊର୍ଦ୍ଧ୍ୱ ବୟସର ଲୋକକୁ ଟିକେଟ୍ ଲାଗିଥାଏ । ପ୍ରବେଶ ପଥରେ ଏକ ଦର୍ଶକକେନ୍ଦ୍ର ଅଛି । ନିଜେ ନିଜର ଆସବାବପତ୍ର ସେଠାରେ ରଖି ପ୍ରବେଶ କରିବାକୁ ହୁଏ । କୌଣସି ଖାଦ୍ୟ ମୁଣି ଧରି ଭିତରେ ପଶିବା ମନା । ପାଣି ପିଇବାକୁ ହେଲେ ପାର୍କ ଭିତରେ ସ୍ଥାନେ ସ୍ଥାନେ ପାନୀୟଜଳ ପିଇବାର ସୁବନ୍ଦୋବସ୍ତ ଅଛି । ଏହା ଭିତରେ ପିକ୍‌ନିକ କରିବା, ରେଡିଓ ବଜାଇବା, ଫୁଲ ଛିଣ୍ଡାଇବା ଓ ସିଗାରେଟ୍ ଟାଣିବା ମନା ।

ଭିତରକୁ ପ୍ରବେଶ କଲେ ଦେଖାଯାଏ ସୁନ୍ଦର ସଳଖ ରାସ୍ତା । କିଛି ଦୂର ଗଲାପରେ ଏହା ସମାନ୍ୟ ଅଙ୍କାବଙ୍କା ହୋଇଥିବାର ଜଣାଯାଏ । ରାସ୍ତାର ଉଭୟ ପାର୍ଶ୍ୱରେ ଛୋଟଛୋଟ ରେଡ୍‌ଉଡ୍ ଗଛମାନ ଉଠିଯାଇଛି । ନୀରବତା ଭରି ରହିଛି । ପକ୍ଷୀର ରାଗିଣୀ ସମୟ ସମୟରେ ଶୁଭିଯାଏ । ରାସ୍ତାର ପାର୍ଶ୍ୱେ ପାର୍ଶ୍ୱେ ବହିଯାଇଛି ଛୋଟ ସରୁ ଝରଣାଟିଏ । ଝରଣାର କୁଳୁକୁଳୁ ଶବ୍ଦ ଶୁଭୁଛି । ମଝିରେ ମଝିରେ ବିଭିନ୍ନ ପକ୍ଷୀ, ଠେକୁଆ, ହରିଣଛୁଆ ପ୍ରଭୃତି ବୁଲୁଥିବାର ଦେଖିବାକୁ ପାଇଲୁ । ରାସ୍ତାଗୁଡ଼ିକ ଏତେ ଲମ୍ବା ଯେ ଆଖି ପାଏନି ଓ ଲାଗେ ଯେମିତି ଅସରନ୍ତି ପଥ, ଅସଂଖ୍ୟ ବୃକ୍ଷରାଜି ରେଡ୍‌ଉଡ୍‌ର ଜଙ୍ଗଲ ସୀମାହୀନ ଓ ସୁଦୂରପ୍ରସାରୀ । ଝରଣାର ଉପର ଦେଇ ସ୍ଥାନେ ସ୍ଥାନେ କାଠପୋଲମାନ ଦୁଇପଟ ଚଲାପଥକୁ ସଂଯୁକ୍ତ କରୁଛି । ଏଇ ଝରଣା ତାମଲାପାଇ ପାହାଡ଼ରୁ ଝରି ଆସିଛି ଓ ଏହା ମୁରଉଡ୍ ପାହାଡ଼କୁ ଦୁଇଭାଗରେ ବିଭକ୍ତ କରୁଛି । ଏହା ବର୍ଷସାରା ଚିରନ୍ତନୀ ସ୍ରୋତ ଭାବରେ ଚାଲିଥାଏ ଓ ବୃକ୍ଷ ତଥା ପଶୁପକ୍ଷୀଙ୍କୁ ଜଳ ଯୋଗାଇଥାଏ । ଏପଟର ଦର୍ଶକ ସ୍ଥାନେ ସ୍ଥାନେ କାଠପୋଲ ଦେଇ ସେପଟକୁ ଯିବାଆସିବା କରୁଥା'ନ୍ତି । ବେଶ୍ ଶାନ୍ତ ପରିବେଶ । ଆନନ୍ଦରେ ଦର୍ଶକମାନେ ଘୂରି ବୁଲୁଥିଲେ ଓ ଅନିର୍ବଚନୀୟ ଶୋଭାରାଜିରେ ମଜ୍ଜି ରହୁଥିଲେ ।



ଅନେକ ଦୂର ପର୍ଯ୍ୟନ୍ତ ଚଲାପଥ ସିମେଣ୍ଟରେ ନିର୍ମିତ । ହେଲେ ତା' ଆଗକୁ ଲମ୍ବିଯାଇଛି ନାଲି ମାଟିର ସରୁ ରାସ୍ତା । ଏହି ରାସ୍ତା ଦୂରକୁ ଓ ଉପରକୁ ତାମଲାପାଇ ପାହାଡ଼ ଶୀର୍ଷକୁ ଗତି କରିଛି । ପାହାଡ଼ର ଶିଖରରେ ପ୍ରଶାନ୍ତ ମହାସାଗରର ଦୃଶ୍ୟ ଦେଖିବାକୁ ମିଳେ । ସବୁଠାରୁ ଆକର୍ଷଣୀୟ ହେଉଛି ରେଡଉଡ୍ ଗଛ । ଏହା ଦେଖିବାକୁ ଏତେ ଲମ୍ବା ଯେ ତା'ର ଶୀର୍ଷଭାଗକୁ ଦେଖିବାକୁ ହେଲେ ଆଖି ପାଏନି । ବୁଝିବାକୁ ପାଇଲୁ-- ଗୋଟିଏ ଗୋଟିଏ ଗଛର ଉଚ୍ଚତା ୩୧୧ ଫୁଟ ରୁ ୩୭୯ ଫୁଟ୍ । ଏହାର ବୟସ ୨୦୦୦ରୁ ୩୨୦୦ ବର୍ଷ । ଏହାର ବ୍ୟାସ ହେଉଛି ୨୨ରୁ ୪୦ ଫୁଟ୍ ଓ ଗଛର ବକ୍‌କଳ(ଚୋପା)ର ମୋଟ ହେଉଛି ୧ ଫୁଟରୁ ୩ଫୁଟ ପର୍ଯ୍ୟନ୍ତ । ଏଥିରୁ ଗଛର ଉଚ୍ଚତା ଓ ଆକାର ଅନୁମାନ କରିହେବ । ସୂଚନାଯୋଗ୍ୟ ଯେ ଆମେରିକାର ସର୍ବପୁରାତନ ଗଛ ହେଉଛି ବ୍ରିଶଲକାନ ପାଇନ୍, ଯାହାର ବୟସ ୪୫୦୦ ବର୍ଷ । ସେହିପରି ସରମ୍ୟାନ ଗଛ କାଲିଫର୍ଣ୍ଣିଆର ସବୁଠାରୁ ବଡ଼ ଓ ଏହାର ଓଜନ ୬ ଟନ୍ ବୋଲି ଜଣାଯାଏ । କିନ୍ତୁ ଉଚ୍ଚତାରେ ରେଡ୍‌ଉଡ୍ ଗଛ ସବୁଠାରୁ ଅଧିକ । ଆମ ଭାରତର ବରଗଛ ସବୁଠାରୁ ପୁରାତନ ଗଛ । କଲିକତାର ବଟାନିକାଲ ଗାର୍ଡେନ୍‌ରେ ଥିବା ବରଗଛର ବୟସ ୪୫୦ ବର୍ଷ ।



ଆମ ପୁରୀ ଜଗନ୍ନାଥ ମନ୍ଦିର ପରିସରରେ ଥିବା କଳ୍ପବଟର ବୟସ ଆକଳନ କରିବା କଷ୍ଟ। ଏହା କେଉଁ କାଳରୁ ଅଛି କହିବା ମୁସ୍କିଲ୍। ହୁଏତ ମୂଳଗଛ ମରିଯାଇ ଓହଳ (ସ୍ତମ୍ଭ) ନୂତନ ବୃକ୍ଷ ଭାବେ ଦଣ୍ଡାୟମାନ ହୋଇଥାଇପାରେ। ଏ ବିଷୟରେ କିନ୍ତୁ ସଠିକ୍ ପ୍ରମାଣ ନାହିଁ। ତିର୍ତ୍ତୋଲ ଅଞ୍ଚଳର ଗୋରେଖ ଗାଦିଠାରେ ଏକ ବଡ଼ ବରଗଛରେ ଅସଂଖ୍ୟ ଓହଳ ଥାଇ ବିସ୍ତାରିତ ହେବାର ଦେଖାଯାଏ।

ଏଠାରେ ପ୍ରାୟ ଅନେକ ଗଛର ବୟସ ୧୮୦୦ ବର୍ଷରୁ ଊର୍ଦ୍ଧ୍ୱ ବୋଲି କୁହାଯାଏ। ଗୋଟେ ଗୋଟେ ଗଛରେ ଥିବା ଖୋଲ ଭିତରେ ୪୦-୫୦ ଜଣ ଲୋକ ଏକତ୍ର ଠିଆ ହୋଇପାରିବେ। ଏହି ଗଛ କୋରଡ଼ରେ ଠିଆ ହୋଇ ଆମେ ଫଟୋ ଉଠାଇଥିଲୁ। ଅନେକ ପୂର୍ଣ୍ଣତାପ୍ରାପ୍ତ ଗଛମାନଙ୍କର ହାରାହାରି ବୟସ ୫୦୦ରୁ ୮୦୦ ବର୍ଷରୁ ଊର୍ଦ୍ଧ୍ୱ।

ଏହି ରେଡଉଡ୍ ଗଛଗୁଡ଼ିକ ମଧ୍ୟମ ଜଳବାୟୁରେ ବେଶ୍ ବଢ଼ିଥା'ନ୍ତି। ଏହି ମୁରଓଡ୍ ଜଙ୍ଗଲରେ କେବେହେଲେ ଗଛ କଟାଯାଏନି। ଏହା ଏକ ସଂରକ୍ଷିତ ଜଙ୍ଗଲ। ଅନେକ ସ୍ଥାନରେ ଉପୁଡ଼ି ପଡ଼ିଥିବା ରେଡ୍‌ଉଡ୍ ଗଛ ଲମ୍ବିଯାଇ ଶୋଇ ରହିଛି। ସ୍ଥାନେ ସ୍ଥାନେ ଚଲାପଥକୁ ଅବରୋଧ କରିଥିବା ଗଛର ଗଣ୍ଡିକୁ କାଟି ପୁଣି ତା' ପାଖରେ ପକାଇ ଦେଇଛନ୍ତି। ରେଡ୍‌ଉଡ୍ ଗଛର ଚାନ୍ଦୁଆ ତଳେ ଆହୁରି ଅନେକ ପ୍ରକାର ଗଛ ଓ ଫୁଲଗଛ ଶୋଭା ପାଉଛି। ସେମାନଙ୍କ ଭିତରେ ରେଡ୍‌ଉଡ୍‌ର ଚାରାଗଛମାନ, ସୋଡ୍‌ଫର୍ନ ଗଛ, ଶୈବାଳ ଜାତୀୟ କ୍ଷୁଦ୍ରଗଛମାନ ଭରି ହୋଇ ରହିଛି। ଏହା ବ୍ୟତୀତ ପାହାଡ଼ ପଟକୁ ଅନେକ ଡଗ୍‌ଲାସ ଫିର୍ ବୃକ୍ଷ ରେଡ୍‌ଉଡ୍ ଗଛକୁ ଆହ୍ୱାନ ନେଇ ଉଚ୍ଚତାରେ ମଧ୍ୟ ବଢ଼ି ଥିବାର ଦେଖାଯାଏ। ତଳେ ଅନେକ ବଣୁଆ ଫୁଲ ଫୁଟି ପ୍ରସ୍ଫୁଟିତ ହୋଇ ପରିବେଶକୁ ସୁଗନ୍ଧିତ କରୁଥାଏ।



ଏହା ଭିତରେ ବୁଲୁଥା'ନ୍ତି ଅନେକ ପଶୁ, ପକ୍ଷୀ ଓ ସରୀସୃପ ଇତ୍ୟାଦି। ହରିଣ, ନେଉଳ, ସାପ, ବେଙ୍ଗ, ପେଚା ଓ ବିଭିନ୍ନ ପ୍ରକାର ଭ୍ରମଣକାରୀ ପକ୍ଷୀମାନେ ଆଶ୍ୱସ୍ତିରେ ଘୂରି ବୁଲୁଥିବାର ଦେଖିବାକୁ ମିଳେ।

ଦର୍ଶକମାନେ ବୁଲି ବୁଲି ଥକିଗଲେ ଚଲାପଥର ଧାରେ ଧାରେ ସିମେଣ୍ଟ ଓ କାଠର ବେଞ୍ଚମାନଙ୍କରେ ବିଶ୍ରାମ ନେଇଥାନ୍ତି।

ମୁର୍‌ଉଡ୍ ପାର୍କ ୫୬୦ ଏକର ଜମି ଉପରେ ଅବସ୍ଥିତ। ଏହା ଭିତରେ ଲମ୍ବି ଯାଇଥିବା ଚଲାପଥ ୬ ମାଇଲରୁ ଊର୍ଦ୍ଧ୍ୱ ହେବ। ମୁରଉଡ୍ ଫରେଷ୍ଟ ଗୋଲଡେନ୍ ଗେଟ୍ ଆନ୍ତର୍ଜାତୀୟ ରିଜର୍ଭ ବାଏସ୍ଫିଅର ଅନ୍ତର୍ଭୁକ୍ତ। ଏହା ପୃଥିବୀର ଅନ୍ୟତମ ବୃକ୍ଷ ଓ ପ୍ରାଣୀ ଉଦ୍ୟାନର ସଂରକ୍ଷିତ ଜଙ୍ଗଲ ବୋଲି କୁହାଯାଏ। ଏଠାକୁ ପ୍ରତିବର୍ଷ ଏକ ନିୟୁତ ଦର୍ଶକ ବୁଲିବାକୁ ଆସିଥା'ନ୍ତି। ଏହା ବିକ୍ଷୁବ୍ଧ ପୃଥିବୀର ଏକ ସଂରକ୍ଷିତ ପ୍ରାକୃତିକ ପରିବେଶର ଦର୍ପଣ ବୋଲି କୁହାଯାଏ।

ଖରାଦିନେ କୁହୁଡ଼ି ସୃଷ୍ଟି ହୋଇ ରେଡଉଡ୍ ଗଛଗୁଡ଼ିକୁ ଜଳୀୟବାଷ୍ପ ଯୋଗାଇଥାଏ। କୁହୁଡ଼ିରୁ ପାଣିଟୋପା ତଳେ ପଡ଼ି ଜଙ୍ଗଲ ତଳ ଓଦା ରଖିବାରେ

ସାହାଯ୍ୟ କରେ । ସମୟ ସମୟରେ ବଣରେ ନିଆଁ ଲାଗିଯାଏ । ଏହି ବନାଗ୍ନି ଜଙ୍ଗଲ ତଳର ଅନାବନା ଗଛକୁ ପୋଡ଼ି ସଫା କରିବା ସଙ୍ଗେ ସଙ୍ଗେ ପାଉଁଶ ମାଟିରେ ମିଶି ଉତ୍ତମ ସାରର କାମ ତୁଲାଇଥାଏ ଓ ରେଡଉଡ୍ ଗଛର ମଞ୍ଜିରୁ ଚାରାଗଛ ଜନ୍ମ ହେବାର ସୁଯୋଗ ସୃଷ୍ଟି କରିଥାଏ । ତଳେ ଜମୁଥିବା ଜୀବାଣୁ ଓ ଛତୁଜାତୀୟ ବୀଜାଣୁ ଅଗ୍ନି ଯୋଗୁ ପୋଡ଼ି ସଫା ହୋଇଯାଏ । ଏହି ବନାଗ୍ନି ୨୦ରୁ ୫୦ ବର୍ଷ ଭିତରେ ଥରେ ଥରେ ଦେଖାଦେଇ ବଣରେ ବନାଗ୍ନିର ଆବଶ୍ୟକତା ପ୍ରତିପାଦିତ କରିଥାଏ । ସମୟ ସମୟରେ ବନାଗ୍ନି ଦ୍ୱାରା ରେଡଉଡ୍ ଗଛର ଗଣ୍ଡିରେ ଅଗ୍ନି ଲାଗି ଖୋଲ କରି ପକାଏ । ସ୍ଥାନେ ସ୍ଥାନେ ଗଲାବେଳେ ଏହି ଗଛର ଖୋଲ ଭିତରେ ପଶି ପରିବାର ସଦସ୍ୟ ଏକତ୍ର ଫଟୋ ଉଠାଇଥା'ନ୍ତି । ଏହି ଖୋଲର ଭିତର ଅଂଶ ପୋଡ଼ିଯାଇଥିବାରୁ କଳା ଦିଶେ । ଏହା ରେଡଉଡ୍ କାଠରେ ଥିବା ରାସାୟନିକ ଟାନିନ୍ ପାଇଁ ହୋଇଥାଏ । ଏହି କେମିକାଲ ମଧ୍ୟ ଅନେକାଂଶରେ ଗଛଗଣ୍ଡିର ମଂଜକୁ ପୋଡ଼ି ଯିବାରୁ ରକ୍ଷା କରିଥାଏ । ତା' ସହିତ ଅନ୍ୟାନ୍ୟ ପୋକ ଓ ଛତୁ ଜାତୀୟ କ୍ଷତିକାରକ କୀଟମାନଙ୍କଠାରୁ ରକ୍ଷା କରିଥାଏ । ରେଡଉଡ୍ ଗଛ ଏକପ୍ରକାର ଦେବଦାରୁ ବା ପାଇନ ଜାତୀୟ ବୃକ୍ଷ ଓ ସବୁ ସମୟରେ ଚିରସବୁଜ ରହିଥାଏ । ଏହି ବୃକ୍ଷର ଫଳ କାଠୁଆ ଟାଣ, ଈଷତ୍ ଲାଲ, ବାଦାମୀ ରଂଗର ଓ ଅଲିଭର ଆକାର । । ରେଡଉଡ୍ ଗଛ ତଳେ ତଳେ ଅସଂଖ୍ୟ ଗଜାଗଛମାନ ଦେଖିବାକୁ ପାଇଲୁ । ଏହାର ପତ୍ରଗୁଡ଼ିକ ଆମ ସୁନସୁନିଆ ଶାଗର ପତ୍ର ଭଳି ଦେଖାଯାଏ ।

ରେଡଉଡ୍ ଗଛର ମୂଳରେ କିମ୍ବା କାଣ୍ଡରେ




ଅନେକ ସମୟରେ ପୁରୁଣା ଗଛରେ ନୂଆ ଗଜୁରି ଥିବାର ଦେଖାଯାଏ । ଏହା ବରଗଛର ଓହଳ ସଙ୍ଗେ ସମାନ । ଏହିଠାରୁ ନୂତନ ଗଛର ଉଦ୍ଭବ ହୋଇଥାଏ । ଯେଉଁ ସ୍ଥାନରେ ଗଛର ଗଣ୍ଡିରେ କ୍ଷତ ହୁଏ ବା କଟିଯାଏ, ସେହିଠାରୁ ଏହି ନୂଆଗଛ ଅଂକୁରିତ ହେବାର ଦେଖାଯାଏ । ପୁରୁଣା ରେଡଉଡ୍ ଗଛକୁ କାଟିଦେଲେ ତା'ର ଗଣ୍ଡିରେ ଅସଂଖ୍ୟ ଗୋଲାକାର ଗାର (ମୁଦି ଭଳି) ସ୍ପଷ୍ଟ ବାରି ହୋଇପଡ଼େ । ଏହି ବୃତ୍ତାକାର ମୁଦି ଭଳି ଗାର ବୃକ୍ଷର ବୟସ ନିର୍ଦ୍ଧାରିତ କରେ ଓ ତାର ଜୀବନର ଇତିହାସ ବର୍ଣ୍ଣନା କରିଥାଏ । ଉଦାହରଣ ସ୍ୱରୂପ, ଈଷତ୍ ପତଳା କଳା ରଂଗର ବୃତ୍ତ ଗୋଟିଏ ବର୍ଷର ପ୍ରତିନିଧିତ୍ୱ କରେ । ଯଦି ବୃତ୍ତଟି ମୋଟା ବା ଓସାରିଆ ଦିଶେ, ତାହା ସେଇ ବର୍ଷର ଅଧିକ ବର୍ଷା ହୋଇ ଗଛ ବଢ଼ିବାର ସୁସ୍ଥ ପରିବେଶର ପ୍ରମାଣ ଦିଏ । ଯଦି ବୃତ୍ତଟି ସରୁ ହୁଏ, ତେବେ ବର୍ଷଟି କଷ୍ଟରେ କଟିଛି ବୋଲି କହିବାକୁ ହୁଏ ।



ଏହାର ମୋଟା ଚୋପା ବା ବକଳ୍କଳ ଗଛର ମଞ୍ଜିକୁ ବାହାର ଉତ୍ତାପ ଓ ଅଗ୍ନିରୁ ରକ୍ଷା କରିଥାଏ। ମୁରଉଡ୍ ଜାତୀୟ ସଂରକ୍ଷିତ ଜଙ୍ଗଲ ଉତ୍ତର କାଲିଫର୍ଣ୍ଣିଆର ପୁରାତନ ଉପକୂଳ ରେଡଉଡ୍ ଜଙ୍ଗଲର ଅଂଶବିଶେଷ। ଏହା ୧୮୦୦ ମସିହା ପୂର୍ବରୁ ଅଛି। ସ୍ଥାନୀୟ କାଠ ବ୍ୟବସାୟୀ ଉଇଲିୟମ୍ କାଣ୍ଟ ଓ ତାଙ୍କର ସ୍ତ୍ରୀ ଏଲିଜାବେଥ୍ କାଣ୍ଟ ୧୯୦୫ ମସିହାରେ ଏହି ଉପତ୍ୟକାରେ ଥିବା ଜମି କିଣିଥିଲେ। ସେ ଏଠାକାର ଅନେକ ରେଡଉଡ୍ ଗଛକୁ ନ କାଟି ସଂରକ୍ଷିତ ରଖିଥିଲେ। ଏହାର ଦୀର୍ଘ ସଂରକ୍ଷଣ ପାଇଁ ସେମାନେ ଏହି ଜଙ୍ଗଲର ୨୯୫ ଏକରରେ ବଢ଼ିଥିବା ରେଡଉଡ୍ ଜଙ୍ଗଲକୁ ତତ୍କାଳୀନ ଫେରୋଲ ସରକାରଙ୍କୁ ଦାନସୂତ୍ରରେ ଦେଇଥିଲେ।

୧୯୦୮ ମସିହାରେ ତତ୍କାଳୀନ ଆମେରିକା ପ୍ରେସିଡେଣ୍ଟ ରୁଜ୍‌ଭେଲ୍ଟ ଏହାକୁ ଜାତୀୟ ସ୍ମୃତି ଭାବରେ ଘୋଷଣା କଲେ। ଉଇଲିୟମ୍ କାଣ୍ଟଙ୍କ ନାମ ଅନୁସାରେ ଏହି ସଂରକ୍ଷିତ ଜଙ୍ଗଲର ନାମ ଜନ ମୁର୍‌ଙ୍କ ନାମରେ ନାମିତ ହେଲା। ଜନ ମୁର୍ ଜଣେ ଅଭିଜ୍ଞ ଜଙ୍ଗଲ ସଂରକ୍ଷଣ ବିଶେଷଜ୍ଞ । ଜନ ମୁର୍ ଓ ତାଙ୍କର ବଂଧୁ କାଣ୍ଟ୍ ପରିବାର ପାଇଁ ଆଜି ରେଡଉଡ୍ ଜାତୀୟ ସଂରକ୍ଷିତ ଜଙ୍ଗଲ ୧୦୦ ବର୍ଷରୁ ଉର୍ଦ୍ଧ୍ୱରେ ପହଞ୍ଚିଲାଣି। ତାଙ୍କର ଦାନ ଓ କାର୍ଯ୍ୟରେ ଉଦ୍‌ବୁଦ୍ଧ ହୋଇ ଗୋଲଡେନ୍ ଗେଟ୍ ଆନ୍ତର୍ଜାତୀୟ ବାଓଷ୍ଫିଅର ସଂରକ୍ଷଣ ବିଭାଗ ଏହାର ସୁରକ୍ଷା ଦାୟିତ୍ୱ ଗ୍ରହଣ କରିଛନ୍ତି। ଏହା ପୃଥିବୀର ସବୁଠାରୁ ମୂଲ୍ୟବାନ ଜଙ୍ଗଲ ବୋଲି କୁହାଯାଉଛି।

ପୃଥିବୀର ସବୁଠାରୁ ବଡ଼ ଗଛ ହେଉଛି-- କେନ୍ଦ୍ର ଅଂଚଳ ଆଫ୍ରିକାର ସାଭନ ଗ୍ରାସ୍‌ଲ୍ୟାଣ୍ଡରେ ଥିବା Boobab ବାବବ ଗଛ। ଏହାର ଉଚ୍ଚତା ହେଉଛି ପ୍ରାୟ ୨୦ ମିଟର। ଗଣ୍ଡିର ବ୍ୟାସ ହେଉଛି ୯ ମିଟର। ଏହାର ଶାଖାଗୁଡ଼ିକ ଛୋଟ ଓ ଗଣ୍ଡିରୁ ବାହାରିଛି। ଏହା ଦୀର୍ଘ ଦିନ ଧରି ମରୁଡ଼ିକୁ ସମ୍ମୁଖୀନ କରି ବଞ୍ଚିପାରେ। ଏହାର କାଠ ଆସବାବପତ୍ର ତିଆରି ପାଇଁ ଯୋଗ୍ୟ ନୁହେଁ। କାରଣ ଏହା ବେଶ୍ ନରମ ଓ ଭିତରେ କଣା କଣା ଥିବାରୁ ପାଣି ଜମି ରହେ। ଏହି ଗଛର ଛେଲି ବା ଉପର ଖୋଳପା ଦଉଡ଼ି ଓ ଅନ୍ୟାନ୍ୟ ବୁଣାବୁଣି କାର୍ଯ୍ୟରେ ଲାଗିଥାଏ।

ଆଫ୍ରିକାର ୱାଇଲ୍‌ଡ୍ ଫିଗ୍ ଟ୍ରିର ଚେର ୧୨୦ ମିଟର ମାଟିତଳକୁ ଯାଇଥାଏ। ଏହା ଏତେ ଲମ୍ବା ଯେ ୪୦ ତଳବିଶିଷ୍ଟ କୋଠା ଉପରୁ ଲମ୍ବାଇଲେ ଏହା ତଳକୁ ପାଇଥାଏ।

*ଅରୁଣୋଦୟ ନଗର, କଟକ- ୧୨* ✡✡




Redwood sorrel



# କଇଁଛ ଓ ଛଞ୍ଚାଣ

ଶାନ୍ତି ସାମଲ

ଶୀତଦିନ ହେଇଥାଏ । ସକାଳେ କଇଁଛଟି ସମୁଦ୍ର କୂଳରେ ବସି ଖରା ପୋହୁଁଥାଏ । ସମୁଦ୍ର ଉପରେ ଛଞ୍ଚାଣଟିକୁ ଉଡ଼ିବାର ଦେଖି ତା' ମନରେ ଆସିଲା ସେ ଛଞ୍ଚାଣପରି ଉଡ଼ିପାରନ୍ତା କି ? ସେ ମନକୁ ମନ ଭାବିଲା, ସେ ତ ପାଣିରେ ପହଁରିପାରୁଛି, ଭୂଇଁରେ ଚାଲିପାରୁଛି, କେବଳ ଆକାଶରେ ଉଡ଼ିବା ବାକି ରହିଛି । ଥରେ ଯଦି ଏଇ ଛଞ୍ଚାଣ ଭାଇ ମୋତେ ସାଙ୍ଗରେ ନେଇ ଉଡ଼ିବାଟା ଶିଖାଇ ଦିଅନ୍ତା, ସେ ନିଶ୍ଚୟ ତା'ପରି ଉଡ଼ିପାରନ୍ତା । ସେଇ ସମୟରେ ଛଞ୍ଚାଣଟି ପାଖରେ ଥିବା ଗଛ ଉପରେ ବସିଲା । କଇଁଛ ତଳିତଳି ଯାଇ ଗଛତଳେ ବସି କହିଲା, "ଛଞ୍ଚାଣ ଭାଇ, ମୋତେ ଟିକେ ଆକାଶରେ ଉଡ଼ିବା ଶିଖାଇ ଦିଅନ୍ତନି ? ତମେ ମୋତେ ଆକାଶରେ ଉଡ଼ିବା ଶିଖାଇଦେଲେ ମୁଁ ତମକୁ ସମୁଦ୍ର ତଳେ ଥିବା ଅନେକ ଧନରତ୍ନ ଆଣିଦେବି ।"

ଛଞ୍ଚାଣ କଇଁଛର କଥାଶୁଣି କହିଲା, "ତମର ଡେଣା ନାହିଁ, ତମେ କେମିତି ଉଡ଼ିବ ।" କଇଛଁ କହିଲା, "ମୋର ଚାରିଟା ଗୋଡ଼ ଅଛି । ମୁଁ ପାଣିରେ ଯେମିତି ଆହୁଲା ମାରି ପହଁରୁଛି, ସେମିତି ମୋ'ଗୋଡ଼ ଦ୍ୱାରା ମୁଁ ଉଡ଼ିବି । ତମେ ଖାଲି ମୋତେ ତମ ଗୋଡ଼କୁ ଧରି ଆକାଶକୁ ଉଡ଼ାଇନିଅ, ତା'ପରେ ମୁଁ ନିଜେ ନିଜେ ଉଡ଼ିବାକୁ ଆରମ୍ଭ କରିବି ।" ଛଞ୍ଚାଣ କଇଁଛର ସାହସ ଦେଖି ତାକୁ ତା'ର ଗୋଡ଼ରେ ଧରି ଆକାଶକୁ ଉଡ଼ିଗଲା । କିଛିବାଟ ଉଡ଼ିଲା ପରେ ଛଞ୍ଚାଣ କଇଁଛକୁ କହିଲା, "ମୁଁ ଆଉ ତୋତେ ଧରିପାରୁନି । ତୁ ନିଜେ ନିଜେ ଉଡ଼ିବାକୁ ଚେଷ୍ଟାକର ।" ଛଞ୍ଚାଣ କଇଁଛକୁ ଛାଡ଼ିଦେଲା ପରେ କଇଁଛଟି ଗୋଟିଏ ପଥର ଉପରେ ପଡ଼ି ଛେଚି ହେଇ ମରିଗଲା । ନିଜର ଶକ୍ତିକୁ କଳନା ନ କରି ବୋକାଙ୍କ ପରି ଅନ୍ୟକୁ ଅନୁକରଣ କରିବାକୁ ଚେଷ୍ଟାକଲେ, କଇଁଛର ଦଶା ଭୋଗିବାକୁ ପଡ଼େ ।



*୧ଏନ ୪, ଓ୍ୱାର୍ଡ - ୪୧, ଅରୁଣୋଦୟ ନଗର, କଟକ-୧୨*

---

## ଶବ୍ଦସନ୍ଧାନ--




(ଉତ୍ତର ୧୯ ପୃଷ୍ଠାରେ)

ମଝି ଘରେ ଏମିତି ଗୋଟିଏ ଶବ୍ଦ ଲେଖନ୍ତୁ, ଯାହାକୁ ଦିଆଯାଇଥିବା ପ୍ରତ୍ୟେକ ଶବ୍ଦର ଆଗରେ ଲଗାଇଲେ ଆଉ ଗୋଟିଏ ଭିନ୍ନ ଅର୍ଥ ପ୍ରକାଶ ପାଇବ ଓ ଏହିସବୁ ଶବ୍ଦଗୁଡ଼ିକର ଅର୍ଥ ବୁଝିବାକୁ ଯତ୍ନବାନ ହୁଅନ୍ତୁ ।

--**ଶ୍ରୀ କାହ୍ନୁଚରଣ ଦାଶ,** ଶାନ୍ତିପୁର, ବଲାଙ୍ଗିର




କବିଜ୍ୟୋତି ଶ୍ରୀ ନିରଞ୍ଜନ ପତି

ଶିକ୍ଷକ ହାତରେ **ଦଣ୍ଡ**
ପିଲା ମନଦୁଃଖ କରିପାରେ ଶୋକ
ପାଇଲେ କିଛି ବି **ଦଣ୍ଡ** ।୧।

କିଣିବା ଆଗରୁ **ତୁଳ**
କମ୍ ବେଶି ହେଲେ ମନେ ଦୁଃଖ ମିଳେ
ବ୍ୟକ୍ତିତ୍ୱ କାହିଁକି **ତୁଳ** ? ।୨।

ଲୋକର ଜ୍ଞାନଟି **କଳ**
ଗହମ ଓ ଧାନ ପେଡ଼ିବା ଗହନ
ନ ଥିଲେ ଏହାର **କଳ** ।୩।

ଚାଷ କାମ ହେଉ **ତୁର**
ବାହାଘର ମଜା ହୁଏନାହିଁ ତାଜା
ନ ବାଜିଲେ ଗୋଟେ **ତୁର** ।୪।

ଗଛରେ ପାଚିଲା **ତାଳ**
ଭଲ ଲାଗେନାହିଁ ଗୀତ ଦେଲେ ଗାଇ
ନ ଥାଇ ଏହାର **ତାଳ** ।୫।

ରାଜାଙ୍କୁ ଶୋଭନ **ତାଜ**
ରାଣୀଙ୍କ ସ୍ମୃତିରେ ଗଢ଼ା ହୋଇଥିଲା
ସପ୍ତାଶ୍ଚର୍ଯ୍ୟେ ସାର **ତାଜ** ।୬।

ଗଛ ପାଇଁ ଲୋଡ଼ା **ତଳି**
ଶୀତ ଯେବେ ହୁଏ ଗୋଡ଼ ଫାଟିଯାଏ
ତେଲ ଲଗା ପାଦ **ତଳି** ।୭।

*୭ମ ମାର୍ଗ, ଅମଲାପଡ଼ା, ଅନୁଗୋଳ*

✤✤

---



## ଧନ୍ଦା

ଶ୍ରୀମତୀ ଅପର୍ଣ୍ଣା ଦାଶ

ଛଅଟି ଅକ୍ଷରେ ନାମ ମୋହର
ସମସ୍ତେ କରନ୍ତି ମୋତେ ଆଦର ।
ପ୍ରଥମ ଦ୍ୱିତୀୟ ଏକାଠି ହେଲେ
ପଦାର୍ଥର ଶେଷ ଅଂଶକୁ ବୁଝାଏ ଭଲେ ।
ପ୍ରଥମ ତୃତୀୟ ମିଶିଯାଉଛି
ସପ୍ତମ ପରର ସଂଖ୍ୟାଟି ହେଉଛି ।
ଚତୁର୍ଥ ଷଷ୍ଠଟି ମିଶିଯାଉଛି
ପକ୍ଷୀଟି ତା'ଲାଗି ଉଡ଼ିଯାଉଛି ।
ପ୍ରଥମ, ପଞ୍ଚମ, ଷଷ୍ଠକୁ ମିଶାଇଦେଲେ
ଭିତରର ଏକ ଅର୍ଥକୁ ବୁଝିବ ଭଲେ ।
ଏହି ଧନ୍ଦାଟିକୁ କହିବ ଯିଏ
ଦେଶ ପାଇଁ କାମ କରିବ ସିଏ ।

*ପାଟୁଳି ଉନ୍ନୀତ ମଧ୍ୟ ଇଂରାଜୀ ବିଦ୍ୟାଳୟ, ପାଟୁଳି*

✤✤

(ଉତ୍ତର ୩୩ ପୃଷ୍ଠାରେ)



# ମହୁମାଛି ଓ ପ୍ରଜାପତି

ଶ୍ରୀମତୀ ପ୍ରେମଲତା ଆଚାର୍ଯ୍ୟ

ଥରେ ପାହାନ୍ତାରୁ ବର୍ଷା ଡାଳି ଦେଇଗଲା ଯେ ଛାଡ଼ିବାର୍ ନାଁ ନାହିଁ। ବଣଜଙ୍ଗଲ କାଟିବାରୁ ପରିବେଶ ପୂରା ନଷ୍ଟ ହୋଇଗଲାଣି। ବର୍ଷା ଡାଳୁଛି ତ ଡାଳୁଛି। ନ ହେଲା ତ ଜମା ନାହିଁ। ଦିନେ ଦଶବାର୍ ଘଣ୍ଟା କାଳ ଡାଳି ଦି'ପହର୍‌କୁ ବର୍ଷା ଟିକେ ଛାଡ଼ିଗଲା। କେତେଗୁଡ଼ିଏ ହଳଦିଆ ରଙ୍ଗର୍ ପ୍ରଜାପତି  ଉଡ଼ି ନ ପାରି କନିଅର ଗଛରେ ବସିଥିଲେ। ବର୍ଷା ଛାଡ଼ିବା ପରେ ସେମାନେ ସମସ୍ତେ ଦଳପତି ପ୍ରଜାପତି ପାଖକୁ ଉଡ଼ି ଆସିଲେ। ସତେକି କନିଅର ଫୁଲଗୁଡ଼ିଏ ! ଦଳପତି ପାଖକୁ ଲାଗିଆସି ସବା ଛୋଟ ପ୍ରଜାପତିଟି କହିଲା, "ଇଏ ବଡ଼ ଅବାଗିଆ ବରଷା ହେଉଛି। ଆମକୁ ଭାରି ଚିଡ଼ି ଲାଗିଲାଣି। ବାହାରକୁ ବୁଲି ଯିବାକୁ ମନ ଭାରି ଛଟପଟ ହେଉଛି।"

ବୁଢ଼ା ପ୍ରଜାପତିଟି ଆଖି ତରାଟି, ଡେଣା ହଲାଇ କଣ୍ଠ ଝାଡ଼ି କହିଲା, "ଦେଖ ପିଲାମାନେ, ତୁମେ ଯଦି ପଦାକୁ ବାହାରିବ, ହାଣ କୁରାଢ଼ି ବେକକୁ ଆଣିବ। ବଡ଼ମାନଙ୍କ କଥା ନ ମାନିଲେ ପଦେ ପଦେ ବିପଦ। ତୁମେ କହିଲ ପିଲାମାନେ, କେମିତି ଅବାଗିଆ ବର୍ଷା ନ ହେବ? ଛୋଟ ପିଲାଠାରୁ ବଡ଼ମଣିଷ ଯାଏ ବଣଜଙ୍ଗଲ, ରାସ୍ତାଘାଟରେ ଥିବା ଗଛ ମଧ୍ୟ କାଟି ପକେଇଲେ । ନିୟମିତ ବର୍ଷା ହେବ କିପରି ? ମଣିଷଗୁଡ଼ାକ ଭାରି ସ୍ୱାର୍ଥପର। ଠାକୁର ଖାଇ ଖଟୁଲି ଖାଇଦେବାକୁ ବସିଲେଣି।"

ଏହି ସମୟରେ ପାଖ ବୁଦା ପାଖରୁ ଧଳା ପ୍ରଜାପତିଗୁଡ଼ିଏ ଉଡ଼ି ଆସି କହିଲେ, "ଭାଇମାନେ ଦେଖ ବର୍ଷା ଛାଡ଼ି ଗଲାଣି। ଆସ ଟିକେ ବୁଲିଆସିବା।" ସତକୁସତ ବର୍ଷା ଛାଡ଼ି ଯାଇଥାଏ। ଯେତେ ଯେଉଁଠି ପ୍ରଜାପତି, କଙ୍କି ଥିଲେ ସମସ୍ତେ ଆକାଶରେ ଆନନ୍ଦ ମନରେ ଉଡ଼ି ବୁଲିଲେ। ସତେକି ଆକାଶରେ ନୂଆ ତାରାଗୁଡ଼ାଏ ! କିଏ କେଉଁ ଫୁଲରୁ ମହୁଟିକେ ଖାଉଥାଏ ତ କିଏ ଆନନ୍ଦରେ ଦୁଇପଦ ଗୀତ ଗାଇ ଦେଉଥାଏ। ସମସ୍ତେଙ୍କ ମୁହଁରେ ପାଟିଏ ଲେଖା ହସ।

ବିଚରା ବୁଢ଼ା ପ୍ରଜାପତିର ଦେହଟା ଟିକେ ଭଲ ଲାଗୁ ନ ଥାଏ। ସେ ଉଡ଼ିଆସି ଅଳ୍ପ ଦୂରରେ ଥିବା ଅତସୀ ଗଛରୁ ମହୁଟିକେ ଖାଇ ବସିଲା। ଏହି ସମୟରେ କୁଆଡୁ ଗୋଟାଏ ମହୁମାଛି ଉଡ଼ି ଆସି କହିଲା, "ତୁ ଏ ଗଛ ପାଖରୁ ଯା ପଳା!" ବିଚରା ବୁଢ଼ା ପ୍ରଜାପତିଟି କହିଲା, "ଦେଖ ଭାଇ ମୁଁ ବୁଢ଼ା ହେଲିଣି। ମୋତେ ଆଉ ବହୁତଗୁଡ଼ାଏ ଉଡ଼ାଉଡ଼ି କରି ଏଠିକୁ ସେଠିକୁ ହେବାକୁ ଭଲ ଲାଗୁନି। ତୁମେ ଆଉ କେଉଁଠାକୁ ଯାଉନ। ଭଗବାନ ଦୁନିଆରେ କାହାରି ପାଇଁ କିଛି ଅଭାବ ଅସୁବିଧା ରଖିନାହାନ୍ତି। ସମସ୍ତେ ଆନନ୍ଦରେ ଖାଇ, ପିଇ ଚଳିବାକୁ ସବୁ ଜିନିଷ ଖଞ୍ଜି ଦେଇଛନ୍ତି। ତୁମେ ଖାଲିଟାରେ ଏ ବୁଢ଼ାଟାକୁ କାହିଁକି ହଇରାଣ କରୁଛ କହିଲ?"

ପ୍ରଜାପତି ଏତିକି କଥା କହିଛି କି ନାହିଁ, ଦେଖ ମହୁମାଛିର ରାଗ । ଗର୍ଜନ କରି କହିଲା, "ସତେ ତୋର ଏତେ ଗର୍ବ ! ମୋତେ ପୁଣି ନୀତିବାଣୀ ଶୁଣାଉଛୁ? ଏଇକ୍ଷିଣା ଏକା ଫୋଡ଼ାକେ ତୋ' ଜୀବନ ନେଇଯିବି ।" ଏହା କହି ତାର ବିଷାକ୍ତ ଶୁଣ୍ଢକୁ ପ୍ରଜାପତିର ଦେହରେ ଫୋଡ଼ିଦେଲା ଯେ ପ୍ରଜାପତିଟି ଚିତ୍କାର କରି ତଳ ଡାଳକୁ ଖସି ପଡ଼ିଲା । ବୁଢ଼ା ପ୍ରଜାପତିଟିର କରୁଣ ଚିତ୍କାର ଶୁଣି ଅନ୍ୟ ପ୍ରଜାପତିମାନେ ଦଉଡ଼ି ଆସିଲେ । ଦେଖିଲା ବେଳକୁ ଦଳପତି ଆହତ ଅବସ୍ଥାରେ ପଡ଼ିଛି । ମହୁମାଛି ଏମାନଙ୍କୁ ଦେଖି ଗର୍ବରେ ନିଶ ଫୁଲାଇ ହସିଦେଇ ମହୁ ସଂଗ୍ରହ କରିବାକୁ ଲାଗି ପଡ଼ିଲା ।

ଦଳପତି ପ୍ରଜାପତି ଏମାନଙ୍କୁ ଦେଖି ସାହସ ସଂଚୟ କରି କହିଲା, "ଦେଖ ପିଲାମାନେ, ଏ ମହୁମାଛି ବଳୁଆ ଦେଖାଇ ବିନା ଦୋଷରେ ପ୍ରତିଶୋଧ ନିଏ । ଏକତାଠାରୁ ଦୁନିଆରେ ଆଉ ବଡ଼ ବଳ କିଛି ନାହିଁ ।" ଏହା କହି କଷ୍ଟରେ ଆଖିରୁ ଦୁଇଧାର ଲୁହ ଗଡ଼ାଇ ପକାଇଲା । ଯେତିକି ପ୍ରଜାପତି ଉଡୁଥିଲେ, ସମସ୍ତେ ଏକଜୁଟ ହୋଇଗଲେ ଯେ ମହୁମାଛି ଯିବାକୁ ବାଟ ପାଇଲାନି । ଯେତେ ବଳୀୟାନ ଶତ୍ରୁ ହେଲେ ମଧ୍ୟ, ଏକତା ପାଖରେ ତା ମନ ଦୁର୍ବଳ ହୋଇଯାଏ । ମହୁମାଛି ମନେମନେ ଭାବିଲା, ଏମାନେ ବୋଧେ ମୋତେ ମାରି ପକେଇବେ । ସେ ବିକଳରେ ମୁଣ୍ଡ ନୁଆଁଇ କହିଲା, "ହେ ଭାଇଭଉଣୀମାନେ ମୋତେ କ୍ଷମା କରିଦିଅ ।"

ସାନ ପ୍ରଜାପତିମାନେ ଗର୍ଜନ କରି କହିଲେ, "ବଳୁଆ ପାଖରେ କେତେଦିନ ଆଉ ଦୁର୍ବଳ ହାର ମାନିବ? ତୋର ଏ ଅନ୍ୟାୟ, ଏ ଅଧର୍ମ ଆମେ ଆଉ ସହିବୁନି । ଆମେ ମଧ୍ୟ ତୋତେ ଉଚିତ ଶିକ୍ଷା ଦେବୁ ।"

ଏହି ସମୟରେ ଦଳପତି ପ୍ରଜାପତିଟି କହିଲା, "ହିଂସାକୁ କେବଳ ଅହିଂସା ତରବାରି ହିଁ ଶାସନ କରିପାରେ । ଏଥରକ ତାକୁ କ୍ଷମା କରିଦିଅ ।" ସବୁ ପ୍ରଜାପତି ଦଳପତିର ଉଦାର ଭାବ ଦେଖି ଆଶ୍ଚର୍ଯ୍ୟ ହୋଇଗଲେ । ମହୁମାଛି ମଧ୍ୟ ଅନୁତାପ କଲା । ମହୁମାଛି ସେହିଦିନଠାରୁ ପ୍ରତିଜ୍ଞା କଲା, "ଯେଉଁଠି ପ୍ରଜାପତିମାନେ ବସି ମହୁ ଖାଉଥିବେ, ସେଠାକୁ ମହୁମାଛି ଯିବେନାହିଁ ।" ଏକଥା ସେ ସବୁ ମହୁମାଛିଙ୍କୁ ଜଣାଇଦେଲା ଯେ ମହୁମାଛିମାନେ ଆଉ ଯୁଗ ଯୁଗକୁ କେବେହେଲେ ଶତ୍ରୁତା ରଖିବାନି । ତା'ପରେ ମହୁମାଛି ପ୍ରଜାପତିଙ୍କ ମୁହଁକୁ ଚାହିଁ ଉଡ଼ିଗଲା । ସେଇଦିନଠାରୁ ପ୍ରଜାପତି ଯେଉଁ ଫୁଲରେ ବସି ମହୁ ଖାଉଥାଏ, ମହୁମାଛି ତା' ପାଖ ଫୁଲରେ ସିନା ବସିବ, ହେଲେ ସେହି ଫୁଲରେ ବସିବାକୁ କଳି କରେନା ।

ଜେଜେବାପା ପିଲାଙ୍କୁ ଗପଟି କହିସାରି କହିଲେ, "ବୁଝିଲ ପିଲାଏ, ପ୍ରଜାପତି, ମହୁମାଛି ଯଦି କଳିକଜିଆ, ହିଂସା, କ୍ରୋଧକୁ ଘୃଣା କରି କଳି ବନ୍ଦ କରିଦେଲେ, ମଣିଷ ଜାତି କାହିଁକି ପାରୁନାହାନ୍ତି ? ତୁମେ ପିଲମାନେ ବଡ଼ ମଣିଷ ହୋଇ ସମସ୍ତଙ୍କୁ ବୁଝାଇଦେବ-- ହିଂସା ହେଉଛି ପରମ ଶତ୍ରୁ, ଯିଏ କେବେ ଜୀବନରେ ଶାନ୍ତି ଦେଇ ପାରିବନି ।"

ଏକଥା ଶୁଣି ପିଲାମାନେ କହିଲେ-- ଆମେ ଭଲ ମଣିଷ ହେବୁ । ସମସ୍ତଙ୍କୁ ବୁଝାଇଦେବୁ 'ହିଂସା କରନାହିଁ, ଅଶାନ୍ତି ଭୋଗନାହିଁ ।

*ବଳଦେବଜୀଉ କଲୋନୀ, ଲେନ୍-୧୨/ଏ, କେନ୍ଦୁଝର-୧*

*ଶବ୍ଦ ସନ୍ଧାନର*
*ଉତ୍ତର--ଜଳ*





# ସାଧୁ ଓ ଗଧ

ଶ୍ରୀ ଲକ୍ଷ୍ମୀଚରଣ ସାମନ୍ତରାୟ୍

ଜଣେ ସାଧୁ ଗଧଟିଏ ପୋଷିଥିଲେ। ସେହି ଗଧ ପିଠିରେ ବସି ସେ ବିଭିନ୍ନ ସ୍ଥାନକୁ ଭ୍ରମଣରେ ଯାଉଥିଲେ। ଭ୍ରମଣ କାଳରେ ଲୋକେ ସାଧୁବାବାଙ୍କୁ ଭକ୍ତି ଓ ଶ୍ରଦ୍ଧାରେ ପୂଜା କରୁଥିଲେ। ତାଙ୍କ ରହିବା ଓ ଖାଇବାର ବନ୍ଦୋବସ୍ତ କରିଦେଉ ଥିଲେ। ତାଙ୍କଠାରୁ ବିଭିନ୍ନ ପ୍ରକାର ନୀତି ଉପଦେଶ ଶୁଣୁଥିଲେ। ଲୋକେ ସାଧୁଙ୍କୁ ଫୁଲଚନ୍ଦନ ଦେଇ ପୂଜା କରୁଥିଲାବେଳେ ଗଧ ମୁଣ୍ଡରେ ମଧ୍ୟ ଚନ୍ଦନର ଟିକା ଲାଗୁଥିଲା। ସାଧୁଙ୍କୁ ସୁସ୍ୱାଦୁ ଖାଦ୍ୟ ଅର୍ପଣ କରାଯାଉଥିଲା ବେଳେ ଗଧକୁ ମଧ୍ୟ ଅବହେଳା କରାଯାଉ ନ ଥିଲା।

ଦିନେ ଗଧ ମନମନେ ଭାବିଲା, ଲୋକେ ସାଧୁଙ୍କୁ ଯେଉଁଭଳି ଶ୍ରଦ୍ଧା କରୁଛନ୍ତି, ମୋତେ ମଧ୍ୟ ସେହିଭଳି ବ୍ୟବହାର କରୁଛନ୍ତି। ମୁଁ ଅଯଥାରେ କାହିଁକି ସାଧୁଙ୍କୁ ପିଠିରେ ବୋହି ବୋହି ବାରଜାଗା ବୁଲୁଥିବି !

ଦିନକର ଘଟଣା। ଦିନେ ରାତିରେ ସାଧୁବାବା ଶୋଇଥିବା ବେଳେ ଗଧଟି ମଠରୁ ବାହାରି ଚାଲିଗଲା। ସେ ଭୁଲ୍‌ରେ ମଧ୍ୟ ଭାବି ନ ଥିଲା ଯେ ସାଧୁବାବାଙ୍କୁ ଛାଡ଼ି ଚାଲିଗଲେ ଲୋକେ ତାକୁ ହତାଦର କରିବେ ବୋଲି। ଶେଷକୁ ତାହାହିଁ ହେଲା। ଲୋକେ ଗଧଟିକୁ ଏକୁଟିଆ ଦେଖି ତାକୁ ନାନାପ୍ରକାର ହାସ୍ୟଟିକଲ କଲେ। ମାଡ଼ ମଧ୍ୟ ମାରିଲେ। ଗଧଟି ପ୍ରାଣ ବିକଳରେ ଧାଇଁଲା।

ଶେଷରେ ଗଧଟି ଜଣେ ଧୋବା ହାବୁଡ଼ରେ ପଡ଼ିଗଲା। ଧୋବା ତାକୁ ଦଉଡ଼ିରେ ବାନ୍ଧିନେଇ ନିଜ ଘରେ ରଖିଲା। ଲୁଗାପଟା ବୋହିବା କାମରେ ଲଗାଇଲା। ସେତେବେଳେ ଯାଇ ଗଧର ଚେତା ପଶିଲା। ସାଧୁବାବାଙ୍କୁ ଛାଡ଼ି ଆସିବାର ଦୁର୍ଦ୍ଦଶା ଜାଣିପାରି ନିଜକୁ ଧିକ୍କାର କଲା।

*ଖାଜାସାହି, ବ୍ରହ୍ମପୁର- ୭୬୦୦୦୧*





ବଜାରକୁ ଜଣେ ପରିବା କିଣିବାକୁ ଯାଇଥିଲା। ଦେଖିଲା ଭେଣ୍ଡି ଅଛି ଆଉ ଦୋକାନୀ ତା'ଉପରେ ପାଣି ଛିଞ୍ଚିବାରେ ଲାଗିଛି। କିଛି ସମୟ ସେଠାରେ ଠିଆ ହେଲା ପରେ ବିରକ୍ତ ହୋଇ ଯାଇ କହିଲା-- ଭାଇ କେତେ ସମୟ ଅପେକ୍ଷା କରିବି ? ଭେଣ୍ଡିର ଚେତା ଯଦି ଫେରିଲାଣି ୧ କିଲୋ ଦେଲ।

# ଶରାଗାତର ଇତିହାସ

ଶ୍ରୀ ଫକୀର ଚରଣ ପାଢ଼ୀ

ଆଦିକାଳରୁ ମଣିଷ ପ୍ରାକୃତିକ ବିପତ୍ତି ଓ ବିପର୍ଯ୍ୟୟର ସାମନା କରିଆସୁଛି । ସବୁ ପ୍ରକାର ପରିସ୍ଥିତିକୁ ମୁକାବିଲା କରିବା ପାଇଁ ମଧ୍ୟ ସେ କିଛି ନା କିଛି ଉପାୟ ବାହାର କରିଛି । କେବଳ ସେତିକି ନୁହେଁ, ନିଜର ନିତ୍ୟ ବ୍ୟବହାର୍ଯ୍ୟ ସାମଗ୍ରୀ, ବିଶେଷ କରି ଖାଦ୍ୟ ସଂଗ୍ରହ ଓ ସଂରକ୍ଷଣ ପାଇଁ ମଧ୍ୟ ସେ ପ୍ରୟାସ ଚଳେଇ ଆସିଛି । କାରଣ ଏସବୁକୁ ଯଦି ସେ ଉପଯୁକ୍ତ ଭାବରେ ସଞ୍ଚୟ ନ କରେ ବା ସାଇତି ନ ରଖେ, ତେବେ ଭିବଷ୍ୟତରେ ଖାଦ୍ୟାଭାବର ସମ୍ମୁଖୀନ ହେବାକୁ ପଡ଼ିପାରେ । ଏ ଭୟ ଓ ଆଶଙ୍କା ତା'ମନକୁ ସର୍ବଦା ଆନ୍ଦୋଳିତ କରୁଥିଲା ।

ସମୟ ବଦଳିବା ସହିତ ଧୀରେ ଧୀରେ ମୁଦ୍ରାର ପ୍ରଚଳନ ହେଲା । ଲୋକେ ଖାଦ୍ୟଶସ୍ୟ ସଂଗ୍ରହ ଓ ସାଇତି ରଖିବା ଉପରେ ଆଗରୁ ଯେଭଳି ଗୁରୁତ୍ୱ ଦେଉଥିଲେ, ମୁଦ୍ରା ପ୍ରଚଳନକୁ ଆସିବା ପରେ ତା'ର ସଂଗ୍ରହ ଓ ସଞ୍ଚୟ ଉପରେ ମଧ୍ୟ ବେଶୀ ଗୁରୁତ୍ୱ ଦେଲେ । କାରଣ ମୁଦ୍ରା ବିନିମୟରେ ଖାଦ୍ୟଶସ୍ୟ ସହିତ ଆବଶ୍ୟକ ଜିନିଷ ମଧ୍ୟ ମିଳିଯାଇ ପାରିବ । ତେବେ ଏ ମୁଦ୍ରାକୁ ପୁଣି କିଭଳି ସାଇତି ରଖାଯିବ, ଏ ପ୍ରଶ୍ନ ମଧ୍ୟ ସେମାନଙ୍କ ମନରେ ଉଠିଲା । ସେଥିପାଇଁ ଧାତୁନିର୍ମିତ ସ୍ୱତନ୍ତ୍ର ଛୋଟ ଛୋଟ ଡବାର ସୃଷ୍ଟି ହେଲା । ସେଥିରେ ବଳକା ମୁଦ୍ରା ସଞ୍ଚିତ ଓ ସୁରକ୍ଷିତ ହୋଇ ରହିଲା ଭବିଷ୍ୟତ ପାଇଁ । ବଳକା ମୁଦ୍ରାର ସଞ୍ଚୟ ଓ ସୁରକ୍ଷାର ପ୍ରୟୋଜନୀୟତାର ଦୃଷ୍ଟିରୁ ପ୍ରଥମେ ଶରାଗାତର ସୃଷ୍ଟି ହୋଇଥିଲା । ପରେ ପରେ ଆସିଲା ଛୋଟ ଡବା, ପେଟେରା, ସିନ୍ଦୁକ, ବାକ୍ସ, ଆଇରନ୍ ଚେଷ୍ଟ୍, ଆଲମିରା ଓ ଲକର୍ ଇତ୍ୟାଦି ।

ଆଗକାଳରେ ମାଟିରେ ପେଣ୍ଡୁ ଭଳି ଗୋଲ ପାତ୍ର ତିଆରି କରୁଥିଲେ କୁମ୍ଭାରମାନେ । ସେହି ଗୋଲାକାର ମାଟିପାତ୍ରର ଉପରେ ମୁଦ୍ରା ପକେଇବା ପାଇଁ ଟିକେ ଫାଙ୍କ ରଖାଯାଉଥିଲା । ଭିତର ଥିଲା ପୋଲା । ଏହି ପାତ୍ରକୁ ଘରର ଏକ କୋଣରେ ପୋତି ରଖାଯାଉଥିଲା, ଯେମିତିକି ଉପରେ ଥିବା ଫାଙ୍କ ଦେଖାଯିବ । କାରଣ ସେହି ଫାଙ୍କ ଦେଇ ପଇସା ପକାଯିବ । ମାଟିରେ ପୋତା ଯାଇଥିବାରୁ ଏହାକୁ କେହି ହଠାତ୍ ଖୋଳି ନେଇ ଯାଇପାରୁ ନ ଥିଲେ, ଫଳରେ ତାହା ନିରାପଦରେ ରହୁଥିଲା । ଏହାକୁ 'ଶରାଗାତ' କୁହାଯାଉଥିଲା । ପୁଣି କେହି କେହି ସେହି ମାଟିପାତ୍ରକୁ ଘରେ ନ ପୋତି ଅନ୍ୟ କେହି ନ ଦେଖିପାରିବା ଭଳି ସ୍ଥାନରେ ଲୁଚାଇ ରଖୁଥିଲେ । ଯେତେବେଳେ ସେହି ପାତ୍ରଟି ପଇସାରେ ଭର୍ତ୍ତି ହୋଇ ଯାଉଥିଲା, ସେତେବେଳେ ତାକୁ ଭାଙ୍ଗି ସଞ୍ଚିତ ପଇସାକୁ କିଛି କାର୍ଯ୍ୟରେ ଲଗାଯାଉଥିଲା । ସାଧାରଣତଃ ପିଲାମାନେ ହିଁ ଏହି କାର୍ଯ୍ୟ କରିବାର ଦେଖାଯାଉଥିଲା । ସେମାନେ ନିଜ ଖର୍ଚ୍ଚରୁ କାଟି ବା କେହି ତାଙ୍କୁ ଖୁସିରେ ପଇସା ଦେଉଥିଲେ, ବଦ୍‌ଖର୍ଚ୍ଚ ନ କରି ସେମାନେ ତାଙ୍କୁ ନେଇ ଶରାଗାତରେ ପକେଇ ଦେଉଥିଲେ । ଏଥିରୁ ଜଣାପଡୁଛି ଯେ ସଞ୍ଚୟର ଇତିହାସ ବହୁ ପୁରାତନ ।

ମହୁମାଛି ଫେଣାରେ ମହୁ ସଞ୍ଚୟ କରି ରଖେ ।

ବର୍ଷାଦିନେ ହଟହଟା ନ ହେବା ପାଇଁ ପିମ୍ପୁଡ଼ିମାନେ ବହୁପୂର୍ବରୁ ଖାଦ୍ୟ ସଞ୍ଚୟ କରି ରଖନ୍ତି। ଆବହମାନ କାଳରୁ ପ୍ରକୃତି ଏ ସଞ୍ଚୟ ଶିକ୍ଷା ଦେଇ ଆସିଛି। କିନ୍ତୁ ମାନବସମାଜ ଏହାକୁ ପରବର୍ତ୍ତୀ ସମୟରେ ଅଭ୍ୟାସ କରିବା ଶିଖିଛି।

ଜଣାଯାଏ ଯେ ଶରାଗାତର ଇତିହାସ ଦୁଇହଜାର ବର୍ଷରୁ ଅଧିକ ପୁରୁଣା, କିନ୍ତୁ ପଞ୍ଚଦଶ ବା ଷୋଡ଼ଶ ଶତାବ୍ଦୀ ବେଳକୁ ପଇସା ରଖିବା ପାତ୍ର ଲୌହ ଚଦରରେ ନିର୍ମିତ ହେଉଥିଲା। ଏହା ଥିଲା ପାନ ରଖିବା ଡବା ଭଳି ଛୋଟ। ଏଥିରେ ରଙ୍ଗ ଦିଆଯାଉଥିଲା। ନଚେତ୍ ତା'ଉପରେ ଚମଡ଼ା ବା କାଠର ଏକ ଆବରଣ ଦିଆଯାଉଥିଲା। ପଇସାର ସୁରକ୍ଷା ପାଇଁ ଏଥିରେ କାରୁକାର୍ଯ୍ୟପୂର୍ଣ୍ଣ ତାଲା ଲଗାଯାଉଥିଲା। ଅଧିକାଂଶ କ୍ଷେତ୍ରରେ ଡବାର ଢାଙ୍କୁଣି ଓ ଡବାର ମଧ୍ୟଭାଗରେ ଥିବା ଫାଙ୍କରେ ଯେଭଳି ପଇସା ଗଳି ନ ପଡ଼େ, ସେଥିପାଇଁ ସେହି ଅଂଶରେ ପତଳା ଚମଡ଼ା ବା ଫିତା ଲଗାଯାଉଥିଲା।

ମଧ୍ୟଯୁଗରୁ ଆରମ୍ଭ କରି ସପ୍ତଦଶ ଶତାବ୍ଦୀର ଆରମ୍ଭ ପର୍ଯ୍ୟନ୍ତ ପଇସା ଡବାର ସ୍ୱରୂପ ଉପଯୋଗିତା ଆଧାରରେ ପରିବର୍ତ୍ତିତ ହେଉଥିଲା। ତା'ପରେ ଆସିଥିଲା ବେତ ବା ବାଉଁଶରେ ତିଆରି ସାନ ବଡ଼ ପେଟେରା, ପେଡ଼ି ଓ ସିନ୍ଦୁକ। ଏସବୁ ମଧ୍ୟ ଦୀର୍ଘକାଳ ଧରି ବ୍ୟବହୃତ ହୋଇଆସୁଥିଲା। ଅତୀତରେ ଏସବୁର ମଧ୍ୟ ମହତ୍ତ୍ୱପୂର୍ଣ୍ଣ ଭୂମିକା ରହିଥିଲା। ଗୀର୍ଜା ବା ପ୍ରାର୍ଥନା ଗୃହଗୁଡ଼ିକରେ ଏହା ଦାନପେଟି ରୂପେ ମଧ୍ୟ ବ୍ୟବହୃତ ହେଉଥିଲା। ସପ୍ତଦଶ ଶତାବ୍ଦୀରେ ହଲାଣ୍ଡ ଯେତେବେଳେ ଆଧୁନିକ ଯୁଗର ବାଣିଜ୍ୟକେନ୍ଦ୍ର ରୂପେ ବିବେଚିତ ହେଲା, ସେତେବେଳେ ଟଙ୍କାପଇସା ରଖିବାର ଏହି ଲୌହଡବାର ଗୁରୁତ୍ୱ ମଧ୍ୟ ବଢ଼ିଗଲା। ଏହି ସମୟରେ ରୂପା ନିର୍ମିତ ମୂଲ୍ୟବାନ ଡବାର ମଧ୍ୟ ପ୍ରଚଳନ ହେଲା। ଧୀରେ ଧୀରେ ଏହାର ପ୍ରଚଳନ ସମଗ୍ର ୟୁରୋପ ମହାଦେଶକୁ ମଧ୍ୟ ବ୍ୟାପିଯାଇଥିଲା। ଊନବିଂଶ ଶତାବ୍ଦୀ ବେଳକୁ ଏହାର ଅତ୍ୟଧିକ ଉପଯୋଗ ମଧ୍ୟ ହେଉଥିଲା।

ବସ୍ତୁତଃ ଏହା ଥିଲା ଶିଳ୍ପାୟନ ଯୁଗ। ଧନୀବର୍ଗ ଲୋକଙ୍କର ତ ଅଭାବ ନ ଥିଲା, କିନ୍ତୁ ଗରିବଲୋକେ ଅଭାବର ସାମନା କରୁଥିଲେ। କାରଣ ସେମାନେ ଯାହା ରୋଜଗାର କରୁଥିଲେ, ସେତକ ଚଳିବାରେ ହିଁ ବ୍ୟୟିତ ହୋଇଯାଉଥିଲା। ଫଳରେ ଭବିଷ୍ୟତରେ କୌଣସି ବିପଦଆପଦରେ ଅର୍ଥର ଆବଶ୍ୟକତା ପଡୁଥିଲେ ସେମାନେ ନାହିଁ ନଥିବା ଦୁଃଖଦୁର୍ଦ୍ଦଶାର ସମ୍ମୁଖୀନ ହେଉଥିଲା। ସୁତରାଂ ନିଜ ଆୟର କିଛି ଅଂଶ ସଞ୍ଚୟ କରି ରଖିଲେ ଭବିଷ୍ୟତରେ କାମରେ ଆସିବ ବୋଲି ଏକ ପ୍ରବୃତ୍ତି ଏହି ସମୟରେ ବିକାଶ ଲାଭ କଲା।

ସଞ୍ଚୟର ଏକ ବାତାବରଣ ସୃଷ୍ଟି ହେବା ପରେ ଡବାର ଅଧିକ ଆବଶ୍ୟକତା ପଡ଼ିଲା। ଏହାର ସ୍ୱରୂପରେ ମଧ୍ୟ ପରିବର୍ତ୍ତନ ଘଟିଲା। ଏହି ସମୟରେ ସମୃଦ୍ଧି, ଶାନ୍ତି ଓ ଧନର ପ୍ରତୀକସ୍ୱରୂପ କୁକ୍କୁଟ, ଗୁଣ୍ଡୁଚିମୂଷା ଓ ଠେକୁଆ ଆକୃତିର ପଇସା ରଖିବା ଡବା ମଧ୍ୟ ତିଆରି ହେଲା। ଉକ୍ତ ଜୀବଙ୍କ ଆକୃତିର ପଇସା ରଖିବା ଡବା ଫ୍ରାନସ୍‌ରେ ବହୁ ସଂଖ୍ୟାରେ ନିର୍ମିତ ହୋଇଥିଲା। ସେଠାରେ ଏହା ଏକ ଶିଳ୍ପର ରୂପ ନେଇଥିଲା। ସୌଭାଗ୍ୟସୂଚକ ଓ ମିତବ୍ୟୟିତାର ପ୍ରତୀକ ରୂପରେ ୟୁରୋପର ପ୍ରାୟ ସବୁଦେଶ ଏକ ଜୀବକୁ ଗ୍ରହଣ କରିଥିଲେ, ତା'ର ନାମ ଥିଲା 'ଶକୁର'।

ଯୁକ୍ତରାଷ୍ଟ୍ର ଆମେରିକାରେ ମଧ୍ୟ ପଇସା ରଖିବା ଡବାର ନିର୍ମାଣ କରାଯାଉଥିଲା, ତେବେ ୟୁରୋପର ଡବାଠାରୁ ତାହା ଭିନ୍ନ ଥିଲା । ଏଥିରେ ଥିଲା କିଛି ଯାନ୍ତ୍ରିକ ବ୍ୟବସ୍ଥା, କିନ୍ତୁ ତାହା ଜଟିଳ ଥିଲା ।

ଏବେ ଧୀରେ ଧୀରେ ସ୍ୱଳ୍ପସଞ୍ଚୟର ଯୁଗ ଶେଷ ହେବାକୁ ବସିଲାଣି । ଫଳରେ ଏହି ପଇସା ରଖିବା ଡବା ମଧ୍ୟ ବିଲୁପ୍ତ ହୋଇ ଏବେ ଐତିହାସିକ ବସ୍ତୁରେ ପରିଣତ ହେଲାଣି । ତାହାର ବିକଳ୍ପ ଭାବରେ ଅନ୍ୟାନ୍ୟ ସାମଗ୍ରୀ ବ୍ୟବହୃତ ହେଲାଣି । ତଥାପି ଗାଁ'ଗହଳରେ କେଉଁଠି କେମିତି ପିଲାମାନଙ୍କ ମଧ୍ୟରେ ସେହି ଶରାଗାତ ବା ପଇସା ରଖିବା ଡବାର ବ୍ୟବହାର ତଥା ଲୋକପ୍ରିୟତା ଏବେ ବି ଦେଖିବାକୁ ମିଳିଥାଏ ।

*ବକଡ଼ାବେଡ଼ା, ଡାବୁଗାଁ- ୭୬୪୦୭୨, ନବରଙ୍ଗପୁର* ⁂

---



**ଡାକ୍ତର--** ତୁମେ ବେକାରରେ ମୋତେ କବିତା ଶୁଣେଇ ଚାଲିଛ । ମୁଁ ଜଣେ ମାନସିକ ରୋଗ ଚିକିତ୍ସକ, କୌଣସି ପତ୍ରିକାର ସଂପାଦକ ନୁହେଁ । ମୋତେ ଆଉ କବିତା ନ ଶୁଣେଇ ନିଜ ରୋଗ ସଂପର୍କରେ କୁହ ।
**ରୋଗୀ--** ମୁଁ ସେଥିହିଁ କରୁଛି । କଥା ହେଲା, ସମସ୍ତେ କହୁଛନ୍ତି, ମୋତେ କୁଆଡ଼େ କବିତା ଶୁଣେଇବାର ରୋଗ ହେଇଛି ।

☆ ☆ ☆

ଜଣେ ଅନିୟମିତ ସ୍କୁଲ୍ ଆସୁଥିବା ଛାତ୍ରକୁ ଶିକ୍ଷକ ପଚାରିଲେ, "ତୁମେ ସବୁଦିନ ସ୍କୁଲ୍ ଆସୁନାହଁ କାହିଁକି ?"
**ଛାତ୍ର-** ସାର୍ ! ଆପଣ ପରା ସେଦିନ କହିଥିଲେ, "ଗୋଟିଏ ସ୍ଥାନକୁ ଯିବା ଫଳରେ ନିଜର ସମ୍ମାନ ହାନି ହୁଏ ।"

ଶ୍ରୀ ସୁରେଶ କୁମାର ପଣ୍ଡା, *ଗୁମୁଡ଼ା, ବି.ସିଂହପୁର, କୋରାପୁଟ- ୭୬୪୦୫୭*



# କ୍ରୀଡ଼ା କୁଇଜ

ଶ୍ରୀ ସତ୍ୟନାରାୟଣ ମହାପାତ୍ର

୧ । ୨୦୧୨ ଲଣ୍ଡନ ଅଲମ୍ପିକ୍ସରେ ଭାରତର ଗୀତା ଫୋଘଟ କେଉଁ ଖେଳ ପାଇଁ ମନୋନୀତ ହୋଇଥିଲେ ?

୨ । ୨୦୧୨ର ଏସିଆ କପ୍ କ୍ରିକେଟ୍‌ରେ କେଉଁ ଦେଶ ଚମ୍ପିଆନ୍ ହୋଇଥିଲା ?

୩ । ବିଜେନ୍ଦ୍ର ସିଂ କେଉଁ ଖେଳ ପାଇଁ ପ୍ରସିଦ୍ଧ?

୪ । ସନ୍ତୋଷ ଟ୍ରଫି କେଉଁ ଖେଳ ପାଇଁ ଦିଆଯାଏ ?

୫ । ସୁବ୍ରତ କପ୍ କେଉଁ ଖେଳ ପାଇଁ ଦିଆଯାଏ ?

୬ । ଆନ୍ତର୍ଜାତିକ ଅଲମ୍ପିକ୍‌ର ହେଡ୍‌କ୍ୱାର୍ଟର କେଉଁଠି ?

୭ । ମର୍ଦ୍ଦେକା କପ୍ କେଉଁ ଖେଳରେ ଦିଆଯାଏ ?

୮ । ୨୦୧୧ ୱାର୍ଲଡ୍ କପ୍ କ୍ରିକେଟ୍‌ରେ କିଏ ସବୁଠାରୁ ଅଧିକ ରନ୍ ସଂଗ୍ରହ କରିଥିଲେ ?

୯ । ଏ ବର୍ଷର ଦେଓଧର ଟ୍ରଫି କିଏ ପାଇଛି ?

୧୦ । ଏ ବର୍ଷର ବିଜୟ ହଜାରେ ଟ୍ରଫି କିଏ ପାଇଛି ?

୧୧ । ପୃଥିବୀର ସବୁଠାରୁ ଅଧିକ ଟଙ୍କା ପାଉଥିବା ଫୁଟବଲ ଖେଳାଳି କିଏ ?

(ଉତ୍ତର ୪୨ ପୃଷ୍ଠାରେ)

*ତଳତେଲେଙ୍ଗା ବଜାର, କଟକ-୯*

# ପରୀ କହିଲାଣି

ଶ୍ରୀ ରାଜକିଶୋର ପାଢ଼ୀ

ପରୀ କହିଲାଣି
ସବୁ ଖାଇ ଦେ'
କୋତପୁର୍ ଗାଁ
ଜେଜେମାଆ ଯାହା
ନଈବାଲିରେ ସେ
ମାଛରୁ ମଟନ୍
ବିଶାଖା ଭାଲିରେ
ବାପାମାଆଙ୍କର
ଯିବେ ଦେଖିବାକୁ,
ଗେଲକରି ତାକୁ
ଦୋଳି ଅଛି ସେଠି
ଆମ୍ବ ଖାଇବାକୁ,
ଛାତରେ ଫୁଟିଛି
ବିରାଡ଼ିର୍ ଛବି

ପଳେଇଯିବ ସେ
କାହିଁକି କହିଲେ
ଓଡ଼ିଶାରେ ଯାଇ
ଦବ ସେ ଖାଇବ
ଖେଳିବ, କିଣିବ
ମିଳୁଚି ତ ସବୁ
ନ ପଢ଼ି ସେ ଯାଇ
ଯଦି ତା'କଥା
କେଇଦିନ ସେଠି
ଦେବେ କେତେ କଥା
ଝୁଲେଇବେ ଜେଜେ,
ଗୋଡ଼େଇଲେ ଯିବେ,
ଫୁଲ କେତେ ସେଠି
ଆଙ୍କି ରଙ୍ଗ ଦେବି

କାଲି ଜେଜେବାପା ସାଂଗରେ
ବାପା ଆଜି ତାକୁ ରାଗରେ !
ସେଇଠି ଏଣିକି ରହିବ
ସବୁଦିନେ ଗପ କହିବ !
ଚକୋଲେଟ୍ ଗାଆଁ ହାଟରୁ
ଭଗବାନପୁର୍ ଘାଟରୁ ।
ଗାଆଁରେ ରହିକି ପଢ଼ିବ
କେଉଁଦିନ ମନେ ପଡ଼ିବ,
ରହିଯିବେ ତା'ସାଙ୍ଗରେ
କହିବେନି କଥା ରାଗରେ ।
ମାଙ୍କଡ଼ ଆସିବେ ବାଡ଼ିକି
ଆସିବେ ଦି'ଦିନ ଛାଡ଼ିକି ।
ମିଳିଦିଦି ଘର ବାଟରେ
ଅଛି ସିଏ ମୋ ପାଠରେ ।

*କୋତପୁର, ଯାଜପୁର- ୭୫୫୦୦୮*

---




ଆପଣ ଜାଣନ୍ତି କି, ଗୋଟିଏ ଟଙ୍କାର ମୂଲ୍ୟ ୧୩ ଆମେରିକୀୟ ଡଲାର୍ ସହିତ ସମାନ ଥିଲା, ସେତେବେଳେ ୧୦ ଗ୍ରାମ୍ ସୁନା ୧୫ ଟଙ୍କାରେ ମିଳୁଥିଲା । ଏ ହେଉଛି ୧୯୧୭ ମସିହାର କଥା । ବର୍ତ୍ତମାନ ଗୋଟିଏ ଡଲାର୍‌ର ମୂଲ୍ୟ ସହିତ ୬୪ ଟଙ୍କା ସହିତ ସମାନ ।

ଅର୍ଥାତ୍ ୯୬ ବର୍ଷ ମଧ୍ୟରେ ଟଙ୍କାର ମୂଲ୍ୟ ପ୍ରାୟ ୮୦୦ ଗୁଣ ବା ୮୦,୦୦୦ ପ୍ରତିଶତ ହ୍ରାସ ଘଟିଛି । ଶୁଣିଲେ ଆଶ୍ଚର୍ଯ୍ୟ ଲାଗେ । ✤✤


ପୃଥିବୀର ଅନ୍ୟ ସବୁଦେଶ ତୁଳନାରେ
ଇଣ୍ଡୋନେସିଆରେ ସର୍ବାଧିକ ଆଗ୍ନେୟଗିରି ଦେଖାଯାଏ ।

ସାଉଦି ଆରବ ହେଉଛି ଏକମାତ୍ର ଦେଶ, ଯେଉଁଠାରେ କୌଣସି ନଦୀ ପ୍ରବାହିତ ହେଉନାହିଁ ।


Saudi Arabia is the only country in the world where there are no rivers.

ମିଆଁମାର (ବର୍ମା) ଦେଶ ଜଙ୍ଗଲର ଏ ଦୃଶ୍ୟ ବର୍ଷକରେ ଥରେ ମାତ୍ର ଦେଖାଯାଏ । ପ୍ରାୟ ସକାଳ ୧୦ଟା ରୁ ୧୧ଟା ମଧ୍ୟରେ ସୂର୍ଯ୍ୟକିରଣ ପାହାଡ଼ ଉପରେ ପଡ଼ି ତଳର ଜଳଭାଗରେ ପ୍ରତିଫଳିତ ହୋଇ ଯୁବତୀଟିଏ ଶିଶୁଟିକୁ ଧରିବାର ଭ୍ରମ ସୃଷ୍ଟି କରେ । ଛବିଟିକୁ ସିଧା ୯୦ ଡିଗ୍ରୀ କୋଣ ବୁଲାଇ ଠିଆ କରାଇ ଦେଖନ୍ତୁ ତ !



## ପୂରାତନ ଯୁଗର ଅସାମାନ୍ୟ ଭାରତୀୟଗଣ
## (ଆଚାର୍ଯ୍ୟ ଶୁଶ୍ରୁତ, ଖ୍ରୀ.ପୂ- ୬୦୦)
## ପ୍ଲାଷ୍ଟିକ୍ ସର୍ଜରୀର ଜନ୍ମଦାତା

ଡାକ୍ତରୀ ଶାସ୍ତ୍ରରେ ପାରଙ୍ଗମ ଋଷି ବିଶ୍ୱାମିତ୍ରଙ୍କ ପୁଅ ଶୁଶ୍ରୁତ ଅତ୍ୟନ୍ତ ବିଖ୍ୟାତ ଥିଲେ। 'ଶୁଶ୍ରୁତ ସଂହିତା'ରେ ସେ ଶଲ୍ୟ ଚିକିତ୍ସା ବିଷୟରେ ବିସ୍ତୃତ ଭାବେ ବର୍ଣ୍ଣନା କରିଛନ୍ତି। ଏହି ପୁସ୍ତକ ଶଲ୍ୟ ଚିକିତ୍ସାର ଏକ ଗନ୍ତାଘର। ପ୍ଲାଷ୍ଟିକ୍ ସର୍ଜରୀ ଓ ନିଶ୍ଚେତକ ଚିକିତ୍ସାର ଜନ୍ମଦାତା ଭାବେ ଲୋକେ ତାଙ୍କୁ ସମ୍ମାନ କରନ୍ତି।

ପାଶ୍ଚାତ୍ୟ ଜଗତରେ ଯେତେବେଳେ ଶଲ୍ୟ ଚିକିତ୍ସା ବାଲ୍ୟାବସ୍ଥାରେ ଥିଲା, ଶୁଶ୍ରୁତ ସେତେବେଳେ ନାକର ପ୍ଲାଷ୍ଟିକ୍ ସର୍ଜରୀ ବା ରାଇନୋପ୍ଲାଷ୍ଟି ଉପଯୋଗ କରି ଜଣକର ନଷ୍ଟ ହୋଇଯାଇଥିବା ନାକକୁ ସମ୍ପୂର୍ଣ୍ଣ ନୂଆ କରିଦେଇଥିଲେ। 'ଶୁଶ୍ରୁତ ସଂହିତା'ରେ ସେ ଭଙ୍ଗା ହାଡ଼ ଯୋଡ଼ାର ୧୨ଟି ପଦ୍ଧତି ବିଷୟରେ ବିଶଦ ବ୍ୟାଖ୍ୟା କରିଛନ୍ତି ଏବଂ ଅସ୍ଥି ସ୍ଥାନଚ୍ୟୁତ ହୋଇଗଲେ କିପରି ଏହାକୁ ପୁନର୍ବାର ସ୍ୱସ୍ଥାନରେ ଲଗା ଯାଇପାରିବ, ସେ ବିଷୟରେ ୬ଟି ଉପାୟ ଦେଇଛନ୍ତି।

ସେ ମନୁଷ୍ୟର ଜରାୟୁର ଭ୍ରୂଣ ବିଷୟରେ ମଧ୍ୟ ସରଳ ଭାବରେ ବିସ୍ତୃତ ଆଲୋଚନା କରିଛନ୍ତି। ଶୁଶ୍ରୁତ ଶଲ୍ୟଚିକିତ୍ସାରେ ୧୨୫ଟି ଯନ୍ତ୍ରପାତି ବ୍ୟବହାର କରୁଥିଲେ, ଯାହା ପଶୁମାନଙ୍କ ମାଡ଼ି ଓ ଚଢ଼େଇର ଅସ୍ଥିରୁ ତିଆରି ହେଉଥିଲା। ସେ ଶଲ୍ୟ ଚିକିତ୍ସାରେ ଅଶ୍ୱର କେଶ ଓ ଗଛ ଛେଲିର ତନ୍ତୁକୁ ସୂତା ଭାବରେ ବ୍ୟବହାର କରିବା ପଦ୍ଧତିକୁ ବାହାର କରିଥିଲେ।

ଶୁଶ୍ରୁତ ସଂହିତାରେ ସେ ୩୦୦ ପ୍ରକାର ଶଲ୍ୟ ଚିକିତ୍ସା ପଦ୍ଧତି ବିଷୟରେ ବ୍ୟାଖ୍ୟା କରିଛନ୍ତି। ✂✂

## (ଭାସ୍କରାଚାର୍ଯ୍ୟ, ଖ୍ରୀ.ପୂ- ୧୧୧୪-୧୧୮୩)
## ବୀଜଗଣିତର ଅସାଧାରଣ ପ୍ରତିଭା

ଜଲଗାଓଁ ମହାରାଷ୍ଟ୍ରର ବିଜାଦିତ ନାମକ ଏକ ଅନାମଧେୟ ଗ୍ରାମରେ ଏହାଙ୍କର ଜନ୍ମ । ସେ ଗଣିତ, ଜ୍ୟାମିତି, ବୀଜଗଣିତରେ ଗବେଷଣା କରି ସ୍ୱନାମଧନ୍ୟ ହୋଇଥିଲେ ଓ ଅମରତ୍ୱ ଲାଭ କରିଥିଲେ। ତାଙ୍କର 'ଲୀଳାବତୀ' ଓ ବୀଜଗଣିତ' ଗଣିତ ଶାସ୍ତ୍ରରେ ଏକ ମାଇଲ ଖୁଣ୍ଟ ପରି ଆଜି ପର୍ଯ୍ୟନ୍ତ ରହିଛି। ଏହା ପୃଥିବୀରେ ଅନେକ ଭାଷାରେ ଅନୂଦିତ ହୋଇଛି। ତାଙ୍କର ପାଣ୍ଡିତ୍ୟ ଯେ କିପରି ଉନ୍ନତ ଧରଣର ଓ

ଉତ୍କୃଷ୍ଟ ଥିଲା, ଏହା ଅନୁମେୟ। ତାଙ୍କର 'ସିଦ୍ଧାନ୍ତ ଶିରୋମଣି'ରେ ସେ ଗ୍ରହନକ୍ଷତ୍ରର ଗତିବିଧି, ଗ୍ରହଣ ଓ ପରାଗ, ମହାକାଶ ବିଜ୍ଞାନ, ଗାଣିତିକ ସୂତ୍ର ଓ ମହାକାଶ ଗବେଷଣା ସଂକ୍ରାନ୍ତୀୟ ଯନ୍ତ୍ରପାତି ବିଷୟରେ ତର୍ଜମା କରିଛନ୍ତି। 'ମୂଳ ସିଦ୍ଧାନ୍ତ'ରେ ସେ ମାଧ୍ୟାକର୍ଷଣ ଓ ମହାକର୍ଷଣ ଶକ୍ତି ବିଷୟରେ ଲେଖିଛନ୍ତି --

"ପୃଥିବୀରେ ମାଧ୍ୟକର୍ଷଣ ଯୋଗୁଁ ଯେ କୌଣସି ବସ୍ତୁ ପୃଥିବୀ ଆଡ଼କୁ ଆକର୍ଷିତ ହୋଇଥାଏ ଓ ମହାକର୍ଷଣ ଯୋଗୁଁ ପୃଥିବୀ, ନକ୍ଷତ୍ର, ନକ୍ଷତ୍ରପୁଞ୍ଜ, ଚନ୍ଦ୍ର, ସୂର୍ଯ୍ୟ ଆଦି ନିଜ ନିଜ କକ୍ଷପଥରେ ମହାକାଶ ସାରା ଘୂରି ବୁଲୁଥା'ନ୍ତି।" ସାର୍ ଆଇଜାକ୍ ନିଉଟନ୍‌ଙ୍କର ୫୦୦ ବର୍ଷ ପୂର୍ବରୁ ଭାସ୍କରାଚାର୍ଯ୍ୟ ମାଧ୍ୟାକର୍ଷଣ ଓ ମହାକର୍ଷଣ ଶକ୍ତି ବିଷୟରେ ଅବଗତ କରାଇଥିଲେ। ସେ ସମୟରେ ଯେତେ ଗଣିତଜ୍ଞ ଥିଲେ, ତନ୍ମଧ୍ୟରେ ଭାସ୍କରାଚାର୍ଯ୍ୟ ଧ୍ରୁବତାରା ଥିଲେ। ପର୍ସିଆ ଓ ଇଉରୋପ୍‌ର ପଣ୍ଡିତମାନେ ମଧ୍ୟ ତାଙ୍କୁ ଭୂରିଭୂରି ପ୍ରଶଂସା କରି ଯାଇଛନ୍ତି। ⁂

## (ଆଚାର୍ଯ୍ୟ ଚରକ, ଖ୍ରୀ.ପୂ- ୬୦୦)
## ଔଷଧର ଜନକ

ଆମେ ତାଙ୍କୁ ଔଷଧର ଜନକ ବୋଲି ଜାଣୁ। ତାଙ୍କର 'ଚରକ ସଂହିତା' ଆର୍ଯ୍ୟୁବେଦ ଡାକ୍ତରଙ୍କ ପାଇଁ ଏକ ଭାଷାକୋଷ। ତାଙ୍କର ରୋଗର ସିଦ୍ଧାନ୍ତ, କାରଣ ଓ ନିରାକାରଣ ବିଷୟରେ ଆଜିର ଡାକ୍ତରମାନେ ପଢୁଛନ୍ତି ଓ ଅନୁସରଣ କରୁଛନ୍ତି।

ଯେଉଁ ସମୟରେ ପାଶ୍ଚାତ୍ୟରେ ଶରୀର ବିଜ୍ଞାନବିଷୟକ ପରସ୍ପର ବିରୋଧି ତଥ୍ୟସବୁ ଡାକ୍ତରମାନଙ୍କୁ ଅସୁବିଧାରେ ପକାଉଥିଲା, ଠିକ୍ ସେହି ସମୟରେ ହିଁ ଚରକ ତାଙ୍କର ଅସୀମ ଜ୍ଞାନ ଓ ବୁଦ୍ଧିମତ୍ତା ଯୋଗୁଁ ଭ୍ରୂଣ, ଜରାୟୁ, ଔଷଧ ସମ୍ବନ୍ଧୀୟ, ରକ୍ତସଞ୍ଚାଳନ ଓ ବିଭିନ୍ନ ରୋଗ, ଯଥା-- ମଧୁମେହ, କୁଷ୍ଠ, ହୃଦୟରୋଗ ବିଷୟରେ ଓ କିପରି ତା'ର ନିରାକରଣ କରାଯିବ, ସେ ବିଷୟରେ ଉପଦେଶ ଦେଇଛନ୍ତି।



ତାଙ୍କ 'ଚରକ ସଂହିତା'ରେ ସେ ୧୦୦,୦୦୦ ପ୍ରକାର ଔଷଧୀୟ ଗଛ, ଗୁଳ୍ମ, ଚେରମୂଳି ବିଷୟରେ ଉଲ୍ଲେଖ କରିଛନ୍ତି, ଯାହା ଅତ୍ୟନ୍ତ ଉପାଦେୟ। ସେ ମଣିଷର ଖାଦ୍ୟର ପ୍ରକାର ଓ କରୁଥିବା କର୍ମ କିପରି ଶରୀର ଓ ସ୍ୱାସ୍ଥ୍ୟ ଉପରେ ପ୍ରଭାବ ପକାଏ, ତାହା ଉଲ୍ଲେଖ କରିଛନ୍ତି। ଆଜିକାର ଡାକ୍ତରମାନେ ତାଙ୍କ କର୍ମ ଆରମ୍ଭ ପୂର୍ବରୁ ଯେଉଁ ଶପଥ ନେଉଛନ୍ତି, ତାହାର ବହୁ ପୂର୍ବରୁ ସେ ଡାକ୍ତରମାନଙ୍କୁ ନୈତିକତାର ଶପଥ ନେବା ବିଷୟରେ ଶିକ୍ଷା ଦେଉଥିଲେ। ସେ ଆମ ଭଳି ଜଣେ ଭାରତୀୟ; କିନ୍ତୁ ଅସାମାନ୍ୟ ଭାରତୀୟ। ⁂

## (ଆଚାର୍ଯ୍ୟ କପିଳ)
## ବ୍ରହ୍ମାଣ୍ଡ ତତ୍ତ୍ୱର ଜନକ

କର୍ଦ୍ଦମ ଋଷି ଓ ଦେବହୂତିଙ୍କ ଗର୍ଭରୁ ଆଚାର୍ଯ୍ୟ କପିଳ ଖ୍ରୀ.ପୂ ୩୦୦୦ରେ ଜନ୍ମଗ୍ରହଣ କରିଥିଲେ ଓ ସେ ସାଂଖ୍ୟଯୋଗର ଜନକ।

ପ୍ରକୃତି, ପୁରୁଷ କିପରି ଅଙ୍ଗାଙ୍ଗୀଭାବରେ ଜଡିତ, ତାହା ସେ କହିଛନ୍ତି। ଶକ୍ତିର ରୂପାନ୍ତରୀକରଣ, ଆତ୍ମା ଓ ବ୍ରହ୍ମାଣ୍ଡର ସୂକ୍ଷ୍ମ ସତ୍ତାମାନଙ୍କ ବିଷୟରେ ସେ ବୁଝାଇ ଦେଇ ଯାଇଛନ୍ତି। ତାଙ୍କର ମତାନୁଯାୟୀ-- ପ୍ରକୃତି, ପୁରୁଷ ସହ ମିଶି ଏ ସୃଷ୍ଟିର ସର୍ଜନା କରିଛନ୍ତି। ଜଣଙ୍କର ଅନୁପସ୍ଥିତିରେ ଏହା ଅସମ୍ଭବ। ଏହା ବ୍ରହ୍ମାଣ୍ଡର ସମସ୍ତ ଶକ୍ତିର ମୂଳାଧାର ଓ ସମସ୍ତ ଶକ୍ତି ଏହିଥିରୁ ହିଁ ସୃଷ୍ଟି ହୋଇଛି।

ସେ ବ୍ରହ୍ମାଣ୍ଡତତ୍ତ୍ୱରେ ଏକ ନୂଆ ଅଧ୍ୟାୟ ଯୋଡ଼ିଛନ୍ତି। ତାଙ୍କର ଅସୀମ ବୁଦ୍ଧିମତ୍ତା, ଜ୍ଞାନ ଓ ମୁକ୍ତ ପର୍ଯ୍ୟବେକ୍ଷଣ ବଳରେ ସେ ଏ ସୃଷ୍ଟିକୁ ଆମୂଳଚୂଳ ଜାଣିପାରିଥିଲେ ଓ ଆମକୁ ଜଣାଇ ଥିଲେ। ଆଜି ବି ଆମେମାନେ ତାଙ୍କ ସାଂଖ୍ୟଯୋଗ ବିଷୟକ ଲେଖା ଦେଖି ଆଶ୍ଚର୍ଯ୍ୟ ହେଉଛେ ଓ ଗର୍ବିତ ମଧ୍ୟ।

ꕥꕥ

## (ଆଚାର୍ଯ୍ୟ ପତଞ୍ଜଳି)

## ଯୋଗର ଜନକ

ଭାରତ ପୃଥିବୀକୁ ଯୋଗବିଦ୍ୟା ଦେଇଛି। ପୃଥିବୀବାସୀ ଏଥିପାଇଁ ଭାରତ ପ୍ରତି କୃତଜ୍ଞ। ଏବେ ପାଶ୍ଚାତ୍ୟରେ ଯୋଗର ପ୍ରସାର ବହୁଳ ଭାବରେ ଚାଲିଛି। ଯୋଗଦ୍ୱାରା ମନୁଷ୍ୟ ଉତ୍କର୍ଷତା ଲାଭ କରେ, ତା'ର ସର୍ବଶେଷ ଆନନ୍ଦ ଲାଭ କରେ ଓ ଭଗବାନଙ୍କ ସହ ମିଳିତ ହୁଏ।

ଆଚାର୍ଯ୍ୟ ପତଞ୍ଜଳି ଉତ୍ତର ପ୍ରଦେଶର ଗୋଣ୍ଡା ଜିଲ୍ଲା (ଗଣରା)ରେ ଜନ୍ମ ନେଇଥିଲେ। ସେ ଶରୀର, ମନ ଓ ଆତ୍ମା ଉପରେ ମଣିଷ କିପରି କର୍ତ୍ତୃତ୍ୱ ଜାରି କରି, ଶ୍ୱାସପ୍ରକ୍ରିୟାକୁ ନିୟନ୍ତ୍ରଣ କରି ଅଗାଧ ସୁଖ ଲାଭ କରିବ, ତା'ର ବାଟ ଆମକୁ ବତାଇଥିଲେ। ସେ ୮୪ ପ୍ରକାର ଯୋଗର ଆସନ ଆମକୁ ଶିଖାଇଛନ୍ତି। ଏହି ଆସନଗୁଡ଼ିକ ଅଭ୍ୟାସ କଲେ ଶ୍ୱାସକ୍ରିୟା, ରକ୍ତ ପ୍ରବାହ, ସ୍ନାୟୁ, ହଜମ କ୍ରିୟା, ଶିରାପ୍ରଶିରା ଓ ଶରୀରର ଅନ୍ୟାନ୍ୟ ଅଙ୍ଗସବୁ ଅତ୍ୟନ୍ତ ସୁସ୍ଥ ଓ କାର୍ଯ୍ୟକ୍ଷମ ରହେ।

ଅଷ୍ଟାଙ୍ଗଯୋଗର ମାର୍ଗ ଆମକୁ ପ୍ରାଞ୍ଜଳ ଭାବରେ ସେ ବତାଇ ଦେଇ ଯାଇଛନ୍ତି। ଯମ, ନିୟମ, ଆସନ, ପ୍ରାଣାୟାମ, ପ୍ରତ୍ୟାହାର, ଧ୍ୟାନ ଓ ଧାରଣା ଦ୍ୱାରା ଏହି ଯୋଗବିଦ୍ୟା ଉତ୍କର୍ଷତା ଲାଭ କରେ। ଏହାର ବୈଜ୍ଞାନିକ ଉପଯୋଗିତାକୁ ପାଶ୍ଚାତ୍ୟ ରାଷ୍ଟ୍ର ଉପଲବ୍ଧି କରିବା ଦ୍ୱାରା ଏହା ପ୍ରସାର ଲାଭ କରି ଆସୁଛି। ପୃଥିବୀର ୬ଟି ଦର୍ଶନଶାସ୍ତ୍ରର ଅଙ୍ଗ ମଧ୍ୟରୁ ଗୋଟିଏ ହେଲା ଯୋଗ। ମନୁଷ୍ୟ କିପରି ଆତ୍ମସଂଯମ, ଆତ୍ମଚେତନା ଓ ପରମସୁଖ ଲାଭ କରିବ, ସେ ଏହାର ଚାବିକାଠି ଆମକୁ ଦେଇଯାଇଛନ୍ତି। -- ଏହାହିଁ ମାନବ ସମାଜର ତାଙ୍କ ପ୍ରତି କୃତଜ୍ଞତା। ꕥꕥ

ଅନୁବାଦ : ଶ୍ରୀ ସତ୍ୟନାରାୟଣ ମହାପାତ୍ର

---

'ସାଧାରଣଜ୍ଞାନ ପରୀକ୍ଷା'ର ଉତ୍ତର

୧. ମସ୍କୋ, ୨. ପ୍ରଣବ ମୁଖାର୍ଜି, ୩. ବ୍ୟାଙ୍କ୍ ଅଫ୍ ହିନ୍ଦୁସ୍ଥାନ, ୪. ଆକବର, ୫. ଆଜିମ୍ ପ୍ରେମ୍‌ଜି, ୬. ଗେଣ୍ଟୋ ପେଙ୍ଗୁଇନ୍ (Gentoo Penguin), ୭. Tax Information Network, ୮. ଉତ୍ତର ପ୍ରଦେଶ, ୯. ଜୁନ୍ ୧, ୧୦. ଫ୍ରାନ୍ସର ସଲି ପ୍ରୁଧୋମ୍ (Sully Prudhomme of France)।

# ଭାଷାଗତ ଶୁଦ୍ଧାଶୁଦ୍ଧି

ରାମକୃଷ୍ଣ ନନ୍ଦ

ଆମେ ଏ ବିଭାଗରେ ଓଡ଼ିଆ ଭାଷାରେ ଶୁଦ୍ଧ ଓ ଅଶୁଦ୍ଧ ପ୍ରୟୋଗ ବିଷୟ ବହୁବାର ଆଲୋଚନା କରି ଆସୁଛୁ । ଶିଶୁ ସାହିତ୍ୟରେ ଓ ପତ୍ରପତ୍ରିକାମାନେଙ୍କରେ ଅନେକ ଭୁଲ୍ ଦେଖାଯାଉଥିବାରୁ ଏହା କରିବା ଆବଶ୍ୟକ ପଡୁଛି । 'ସଂସାର'ରେ ପ୍ରକାଶିତ ଶବ୍ଦଧନ୍ଦା ମଧ୍ୟ ଏହି ଉଦ୍ଦେଶ୍ୟରେ ଦିଆଯାଉଛି । ପ୍ରତି ମାସରେ ଦୁଇଟି ଗୋଟିଏ ସାଧାରଣ ଅଶୁଦ୍ଧିକୁ ଆଖି ଆଗରେ ରଖି ପ୍ରଶ୍ନ ତିଆରି କରିବାକୁ ହୁଏ । ଧରନ୍ତୁ ଗୋଟିଏ ଶବ୍ଦ 'ଛୁଟି' । ଛାତ୍ରଛାତ୍ରୀମାନେ ଏ ଶବ୍ଦ ସଙ୍ଗେ ବେଶି ପରିଚିତ, ଅଥଚ କେହି କେହି ତାକୁ 'ଛୁଟୀ' ଲେଖୁଛନ୍ତି । 'ଭୁଲ୍' ଆଉ ଏକ ଶବ୍ଦ, ଯାହାକୁ 'ଭୂଲ୍' ଲେଖୁଛନ୍ତି । ବାରମ୍ବାର କହିଲେ ସୁଦ୍ଧା ପିଲାମାନେ ନିଜ ନାମଟିକୁ ଶୁଦ୍ଧଭାବରେ ଲେଖୁ-ନାହାନ୍ତି । ଏ ମାସ ତାଲିକାରୁ କେତୋଟି ଉଦାହରଣ ଦେଉଛୁ-

୧) ଗିରୀଜା--ଗିରିରୁ ଜାତ, ସ୍ତ୍ରୀ ଲିଙ୍ଗରେ ଆ= ଗିରିଜା ଅର୍ଥାତ୍ ପାର୍ବତୀ । ଏହା ଗିରୀଜା କାହିଁକି ହେବ?

୨) ଦିଲ୍ଲୀପ--ଭାରତର ରାଜଧାନୀ 'ଦିଲ୍ଲୀ' ହୋଇଥିବାରୁ 'ଦିଲୀପ' ଶବ୍ଦରେ 'ଲ୍ଲ' ଦିଆଯାଉଛି । କିନ୍ତୁ ପୌରାଣିକ ରାଜାଙ୍କର ନାମ ଥିଲା'ଦିଲୀପ' ।

୩) ଆରତି ଓ ଅଞ୍ଜଳିକୁ ଆରତୀ ଓ ଅଞ୍ଜଳୀ ଲେଖାଯାଉଛି ।

କେହି କେହି ପାଠକ ଆମକୁ ପଚାରୁଛନ୍ତି-- ହେଉଛି ସ୍ଥଳରେ ହେଉଚି, ତା'କୁ ସ୍ଥାନରେ ତାକୁ, କମା ସ୍ଥାନରେ ଡ୍ୟାସ୍ ହେବା ଠିକ୍ କି ? ଆମେ କହିବୁ ସବୁ ଠିକ୍ । ଏଗୁଡ଼ାକ ଗୁରୁତର ଅଶୁଦ୍ଧି ନୁହେଁ । ଯେଉଁ ଭୁଲ୍‌ଗୁଡ଼ିକ ଭାଷାକୁ କଳୁଷିତ କରୁଛି, ସେଗୁଡ଼ିକ ପ୍ରତି ଦୃଷ୍ଟି ଦିଅ । 'ବେଶି'କୁ 'ବେଶୀ' ଲେଖିଲେ ଚଳିଯାଉଛି, ଯେହେତୁ ଏହା ଦେଶଜ ଶବ୍ଦ, କିନ୍ତୁ 'ଗିରି' କୁ 'ଗିରୀ' ଲେଖିଲେ ଆଦୌ ଚଳିବ ନାହିଁ। କାରଣ ସେସବୁ ତତ୍‌ସମ ବା ସଂସ୍କୃତରୁ ଆନୀତ ।

ବର୍ଣ୍ଣାଶୁଦ୍ଧିକୁ ଛାଡ଼ିଦେଲେ ଅନ୍ୟାନ୍ୟ ବ୍ୟାକରଣଗତ ଭୁଲ୍ ବଢ଼ିବାରେ ଲାଗିଛି । ଗଲା ମାସରେ ଗୋଟିଏ ଶିଶୁପତ୍ରିକାରେ ଦେଖିଥିଲୁ 'ବିସ୍ମିତ ସହକାରେ ଅନାଇଲା ।' ଏପରି ଅଶୁଦ୍ଧି ଅମାର୍ଜନୀୟ । ଏହା ହୋଇଥାନ୍ତା 'ବିସ୍ମୟ ସହକାରେ' । ବିଶେଷ୍ୟ ପରେ ପରେ 'ସହକାରେ' ବସେ, ଯେପରି ବିନୟ ସହକାରେ, ସମ୍ମାନ ସହକାରେ, ଯତ୍ନ ସହକାରେ ଇତ୍ୟାଦି ।

ସେହି ପତ୍ରିକାରେ ଅନ୍ୟ ଏକ ସ୍ଥାନରେ ଅଛି-- 'ଖବର ସମ୍ବାଦ ଛପାହୁଏ ।' ଏପରି ଦ୍ୱିରୁକ୍ତି ଭାଷାରେ ପ୍ରଚଳିତ ନାହିଁ। କେହି କେହି କହିପାରନ୍ତି ଓଡ଼ିଆରେ ଏପରି ବହୁ ଏକାର୍ଥବୋଧକ ଯୁଗ୍ମର ପ୍ରୟୋଗ ଅଛି, ଯଥା--ବଣଜଙ୍ଗଲ, ଜନମାନବ, ଝଡ଼ବତାସ, ନିଶାରାତି ପ୍ରଭୃତି । ଏସବୁରେ ଥିବା ଦୁଇଟିଯାକ ଶବ୍ଦ ଏକାର୍ଥବୋଧକ; କିନ୍ତୁ ମନେରଖିବାକୁ ହେବ, ଯାହା ଭାଷାରେ ବହୁକାଳରୁ ଚଳିଯାଇଛି, ତାକୁ ଶୁଦ୍ଧଭାଷା ଭାବି ଗ୍ରହଣ କରିବାକୁ ହେବ । ମାତ୍ର ଏହି ନଜିର୍ ଦେଖାଇ ଆମେ ଯଦି ନୂଆ ଯୁଗ୍ମଶବ୍ଦ, ଯଥା-- 'ବହିପୁସ୍ତକ', 'ପିତାବାପା', 'ଘରଗୃହ'କୁ ବ୍ୟବହାର କରିବାକୁ ଚେଷ୍ଟା କରିବା, ତେବେ ଭାଷାର ଶୃଙ୍ଖଳା ନଷ୍ଟ ହୋଇଯିବ ।

ଭାଷା ଏକ ପ୍ରବହମାନା ନଦୀ ପରି ସର୍ବଦା ଆଗେଇ ଚାଲିଛି। ଯିବା ବାଟରେ ସେ କେତେକ ପଦାର୍ଥ ଛାଡ଼ିଯାଉଛି, ପୁଣି କେତେ ନୂଆ ଜିନିଷ ସଂଗ୍ରହ କରିନେଉଛି। 'ଏମନ୍ତ ସମୟ୍ରେ', 'ମୁଁ ଏହା କରନ୍ତେ', 'ଦେଖିଣ'-- ଏପରି ପ୍ରୟୋଗ ପୂର୍ବେ ଯେତେ ଚଳୁଥିଲା, ଏବେ ଆଉ ସେପରି ନାହିଁ। ଦେଶବିଦେଶର ଲୋକଙ୍କ ସଙ୍ଗେ ଆମର ସମ୍ପର୍କ ଦିନକୁ ଦିନ ବଢୁଥିବା ଦୃଷ୍ଟିରୁ ବହୁ ନୂତନ ପ୍ରୟୋଗ ଭାଷାକୁ ଆସିଗଲାଣି। ତଳୁ ଉଠାଇବା ଅର୍ଥରେ 'ତୋଳିବା' ପୂର୍ବରୁ ବ୍ୟବହୃତ ହେଉଥିଲେହେଁ 'ସେ ପିଲାଟିକୁ ତା ଆଦର୍ଶରେ ଗଢ଼ି ତୋଳିଲା'-- ଏପରି ବ୍ୟବହାର ଓଡ଼ିଆରେ ଚଳୁ ନ ଥିଲା। ଏବେ କିନ୍ତୁ ଅନେକେ ଏପରି ଲେଖୁଛନ୍ତି। ବଙ୍ଗଳା 'ଗଡ଼େ ତୁଲ୍‌ଲ'ର ଏହା ଅନୁକରଣ।

★★




**ଫରାସୀ ବିପ୍ଳବର ତୁଙ୍ଗ ନେତା**

ଫରାସୀ ବିପ୍ଳବର କଥା। ଜର୍ଜ୍ ଦାନ୍ତେ ସେ ସମୟ୍ର ଏକ ତୁଙ୍ଗ ନେତା ଥିଲେ। ତାଙ୍କରି ଓଜସ୍ୱିନୀ ଭାଷଣରେ ଫ୍ରାନ୍‌ସରେ ନିଆଁ ଜଳୁଥିଲା। ଲୋକେ ବିପ୍ଳବରେ ଝାସ ଦେଉଥିଲେ। ତାଙ୍କୁ ଗିଲୋଟିନ୍ ଯନ୍ତ୍ରରେ ଫାଶୀ ଦେବାକୁ ଆଦେଶ ହେଲା। ଜର୍ଜ୍ ଦାନ୍ତେ ହସି ହସି ଏହି ଆଦେଶକୁ ଗ୍ରହଣ କଲେ। ଫାଶୀ ପୂର୍ବରୁ ନିର୍ଭୀକତାର ସହ ଶାସନକର୍ତ୍ତାଙ୍କୁ କହିଲେ, ''ମୋର କଟାମୁଣ୍ଡ ମୋ ଲୋକମାନଙ୍କୁ ଦେଖାଇବ, କାରଣ ସେମାନେ ପ୍ରତିଦିନ ଏପରି ମୁଣ୍ଡଟିଏ ଦେଖୁନାହାନ୍ତି।''

ସଂଗ୍ରାହକ- **ଯୁଗୋଳ କିଶୋର ଷଡ଼ଙ୍ଗୀ**, *ନୀଳଚକ୍ର ନଗର, ଟିଟିଲାଗଡ଼, ବଲାଙ୍ଗୀର*



# ଧୂଷା

ଶ୍ରୀମତୀ ସ୍ନେହଲତା ମହାନ୍ତି

କଳାଧଳା ମିଶା ଦେହଟି ତାହାର
ଝୁଲା ଝୁଲା କାନ ଦୁଇ ।
ଶିକାରୀପଣରେ ଗାଁ' ଗୋଟାକରେ
ତାହା ପରି କେହି ନାହିଁ । ୦।
କଳାଧଳା ମିଶା........
ନାଆଁଟି ତାହାର 'ଧୂଷା'
ସେ ଆମ କୁକୁର ପୋଷା
ଘରଜଗା କାମ ତା'ର
ସେ ଆମ ଚଉକିଦାର ।
ଅଜଣା କାହାକୁ ଦେଖିଲେ ତାହାକୁ
ଘରକୁ ଛାଡ଼ଇ ନାହିଁ
ଭୁକି ଉଠି ଯାଏ ଧାଇଁ ।୧ ।
କଳା ଧଳା ମିଶା.......
ହେଉ ସେ ସାପ କି ବେଙ୍ଗ
ଜୀବନ ନିଏ ତା ଆଗ ।
ଭାତ-ମାଂସ-ମାଛ ଖାଏ
ରାତି ସାରା ଚେଇଁଥାଏ
ତା'ଲାଗି ଆମର ଏତେ ଟିକେ ହେଲେ
ଡର ନାହିଁ ଚୋର ପାଇଁ
ସୁଖେ ଆମେ ଯାଉ ଶୋଇ। ୨ ।
କଳା ଧଳା ମିଶା......

*ବାଙ୍କିସାହି, କଟକ- ୯*




# ତାରର ମୃତ୍ୟୁ

ଶ୍ରୀ ଶୁଭେନ୍ଦ୍ର ମୋହନ ଶ୍ରୀଚଂଦନସିଂହ

ଜନ୍ମ ହେଲେ ଦିନେ ମୃତ୍ୟୁ ହୁଏ । ସୃଷ୍ଟିର ଏହା ଏକ ଚିରନ୍ତନ ରୀତି । ୧୮୩୫ରେ ତାରର ଜନ୍ମ । ସଂକେତରେ ଟରେ ଟକ୍କା କରି ଭାଷା ପଠେଇବା ଲାଗି ମୋର୍ସ ଗୋଟେ ପଦ୍ଧତି ଉଦ୍ଭାବନ କଲେ । ୧୮୪୪ରେ ସେ ଓ୍ୱାଶିଂଟନ୍‌ରୁ ଏକ ତାରବାର୍ତ୍ତା ପଠାଇଲେ । ଖୁବ୍ ଶୀଘ୍ର ଏ ପୃଥିବୀ ଏ ତାରବାର୍ତ୍ତା ପଦ୍ଧତିକୁ ଆପଣେଇନେଲା । ଲୋକ ଲୋକ ମଧ୍ୟରେ, ଦେଶ ଦେଶ ମଧ୍ୟରେ ତାହା ଜନପ୍ରିୟ ହେଲା । ଦୂର ସ୍ଥାନକୁ ଖବର ପଠେଇବା ଲାଗି କେବଲ୍ ଲାଗିଲା । ଅଭିନନ୍ଦନ, ନିମନ୍ତ୍ରଣ, ସ୍ୱାଗତିକା, ବ୍ୟାବସାୟିକ ବାର୍ତ୍ତାର ସୁଅ ଛୁଟିଲା । ବିରାଟ ପୃଥିବୀକୁ ଛୋଟ କରିବାରେ ଓ ଦୂରକୁ ନିକଟ କରିବାରେ ତାରବାର୍ତ୍ତା ତା'ର ଅପୂର୍ବ ଭୂମିକା ଆରମ୍ଭ କରିଦେଲା । ଦୁର୍ଭିକ୍ଷ, ଭୂକମ୍ପ, ଯୁଦ୍ଧ, ବିପ୍ଲବ ସମୟରେ ତାରବାର୍ତ୍ତା କମାଲ୍ କାମ କଲା ।



୧୮୫୦ ବେଳକୁ ଭାରତରେ ତାରସେବା ଆରମ୍ଭ ହୁଏ । ପ୍ରଥମେ କଲିକତାରେ ଏହାର ଆରମ୍ଭ । ତା'ପରେ କ୍ରମେ ଦେଶସାରା ଡାକଘର ସଙ୍ଗେ ତାରବାର୍ତ୍ତା ଯୋଡ଼ି ହୋଇଗଲା । ସାଧାରଣ ଟେଲିଗ୍ରାମ୍, ଏକ୍ସପ୍ରେସ୍ ଟେଲିଗ୍ରାମ୍, ଲାଇଟ୍‌ନିଂ ଟେଲିଗ୍ରାମ୍ ସାହାଯ୍ୟରେ ବିଭିନ୍ନ ପ୍ରକାର ବାର୍ତ୍ତା ପଠାଗଲା ।

ସ୍ୱାଧୀନତା ପରେ ଦୂରସଞ୍ଚାର ନିଗମ ଅଧୀନରେ ଏ ବିଭାଗ କାମକଲା । କିନ୍ତୁ ୧୯୯୦ ବେଳକୁ ଏହି ଉପକାରୀ ସଂସ୍ଥାଟିର ଗୁରୁତ୍ୱ କମିବା ଆରମ୍ଭ କରେ । ଟେଲିଫୋନ୍, ସେଲ୍‌ଫୋନ୍ କ୍ରମେ ଟେଲିଗ୍ରାମର ଗୁରୁତ୍ୱ କମାଇଦେଲେ । ଶେଷରେ ସେ ବ୍ୟବସ୍ଥା ସମ୍ପୂର୍ଣ୍ଣ ରୁଗ୍‌ଣ ଓ ଅକାମୀ ହୋଇପଡ଼ିଲା । ଭାରତ ସରକାର ସ୍ଥିର କଲେ ତାରବାର୍ତ୍ତା ବ୍ୟବସ୍ଥାକୁ ସମ୍ପୂର୍ଣ୍ଣ ବନ୍ଦ କରିଦେବେ ।

ଠିକ୍ ହେଲା ୧୫.୦୭.୨୦୧୩ଠାରୁ ଟେଲିଗ୍ରାମ୍ ବ୍ୟବସ୍ଥା ଠପ୍ ହେବ । ବିଭିନ୍ନ ଅଞ୍ଚଳରେ ଲୋକ ଓ ଛାତ୍ରଛାତ୍ରୀ ତା'ପୂର୍ବରୁ ଶେଷ ଟେଲିଗ୍ରାମ୍ କରିବାରେ ଲାଗିଗଲେ । ଗୁଜୁରାଟର ଭଦୋଦରାର ଦୁଇଟି ସ୍କୁଲ୍‌ର ପିଲାଏ ଗୋଟେ ଦିନରେ ୬୦୭୪ ଟେଲିଗ୍ରମ୍ ପଠେଇ ଗିନିସ୍ ବୁକ୍ ଅଫ୍ ଓ୍ୱାର୍ଲଡ଼୍ ରେକର୍ଡରେ ସ୍ଥାନ ପାଇଛନ୍ତି । ଆମର ପ୍ରିୟ ବାପୁଜୀଙ୍କ ମହାପ୍ରସ୍ଥାନ ବେଳେ ବାର୍ତ୍ତାଟି ଥିଲା: Govt of India regret. Mahatma Gandhi was victim of shooting outrage. Gandhiji expired yesterday evening.

*୨୦୬, ହନୀ ଅର୍ଚ୍ଚନା କଂପ୍ଲେକ୍ସ, ବ୍ଲକ୍- ୨, ଊଁଟଖାନା, ନାଗପୁର- ୪୪୦୦୦୯, ମହାରାଷ୍ଟ୍ର*

# ଦୁଇ ବନ୍ଧୁ

ଶ୍ରୀ ରାମଚନ୍ଦ୍ର ପ୍ରଧାନ





ଅନେକ ଦିନ ତଳର କଥା। ସେତେବେଳେ ଜ୍ଞାନ ଓ ଯଶ-- ଏ ଦୁହିଁଙ୍କ ଭିତରେ ବହୁତ ବନ୍ଧୁତା ଥିଲା। ଜଣେ ଅନ୍ୟକୁ ଛାଡ଼ି ମୁହୂର୍ତ୍ତେ ରହି ପାରୁ ନ ଥିଲେ। ଥରେ ଦୁଇଜଣ ନଈ କୂଳରେ ବୁଲୁଥିଲେ। ସନ୍ଧ୍ୟା ସମୟ। ଏତିକିବେଳେ କିଛି ଦୂରରେ କାହାର କାନ୍ଦଣା ଶୁଣିଲେ। କାନ୍ଦଣାକୁ ଅନୁସରଣ କରି ସେମାନେ ଗୋଟିଏ ଗଛ ମୂଳରେ ପହଞ୍ଚିଲେ। ଗଛ ତଳେ ଜଣେ ଲୋକ ବସିଥାଏ। ଆଖିରୁ ତା'ର ଲୁହଧାର ବୋହିଯାଉଥାଏ। ଦୁହେଁ ତାକୁ କାନ୍ଦିବାର କାରଣ ପଚାରିଲେ। ଲୋକଟି କହିଲା, "ଧନ ଓ ବଳ ନାମରେ ମୋର ଦୁଇଜଣ ବିଶ୍ୱସ୍ତ ସହଚର ଥିଲେ। ସେମାନେ ହଠାତ୍ ମୋତେ ଛାଡ଼ି କୁଆଡ଼େ ପଳାଇ ଯାଇଛନ୍ତି। ସେମାନଙ୍କୁ ନ ପାଇ ମୁଁ ଏକୁଟିଆ ଦୁଃଖୀ ଜୀବନ କଟାଉଛି।"

ଏହା ଶୁଣି ଦୁଇବନ୍ଧୁ ଦୁଃଖ ପ୍ରକାଶ କଲେ। ସେମାନେ ମନୁଷ୍ୟର ସହଚର ହେବେ ବୋଲି କଥା ଦେଲେ। ମନୁଷ୍ୟ ସେ ଦୁହିଙ୍କୁ ଧରି ଖୁସି ମନରେ ଘରକୁ ଫେରିଲା। ଜ୍ଞାନ ଓ ଯଶକୁ ପାଇବା ପରେ ମଣିଷର ଜୀବନ ଆନନ୍ଦମୟ ହେବାକୁ ଲାଗିଲା। ସେ ଦୁହିଁଙ୍କ ସାହାଯ୍ୟ ପାଇ ମଣିଷ ଧନ ଓ ବଳର ଅଭାବ ଭୁଲିଯିବାକୁ ଲାଗିଲା।

ତେଣେ ଧନ ଓ ବଳ ମଣିଷକୁ ଛାଡିଯିବା ପରେ ଅନେକ ଆଡ଼େ ବୁଲିଲେ; ମାତ୍ର କେଉଁଠି ମଣିଷ ଭଳି ସଚ୍ଚୋଟ ମୁନିବ ପାଇଲେ ନାହିଁ। ମନଦୁଃଖରେ ପୂର୍ବ ମୁନିବ ପାଖକୁ ଫେରିଆସି ସେମାନଙ୍କୁ ଗ୍ରହଣ କରିବାକୁ ଅନୁରୋଧ କଲେ। ମଣିଷ ତ ଯଶ ଓ ଜ୍ଞାନକୁ ନେଇ ରହିଥାଏ। ତଥାପି ଜ୍ଞାନ ଉପରେ ସେ ସନ୍ତୁଷ୍ଟ ନ ଥାଏ। ଜ୍ଞାନ ତାକୁ ଆନନ୍ଦ ଦେବା ପରିବର୍ତ୍ତେ ବିଭିନ୍ନ ଜଞ୍ଜାଳ ଆଣି ଠୁଳ କରୁଥାଏ। ଅନ୍ୟ ପକ୍ଷରେ ଯଶ ତା' ମନମୁତାବକ କାମ କରୁଥାଏ। ଏହାପରେ ପୂର୍ବ ସହଚରଙ୍କ କାର୍ଯ୍ୟକଳାପ ବିବେଚନା କରି ମଣିଷ ଜାଣିପାରିଲା, ବଳ ଅପକ୍ଷା ଧନ ତାର ବେଶୀ ସେବା କରିପାରିବ। ଏଣୁ ସେ ଧନ ଓ ଯଶକୁ ନିଜର ଭୃତ୍ୟରୂପେ ନିଯୁକ୍ତି ଦେଇ ଅନ୍ୟମାନଙ୍କୁ ବିଦାୟ କରିଦେଲା।

ଯଶ ଓ ଧନ ତ ପରସ୍ପରର ଅପରିଚିତ। ସେମାନେ ଏକାଠି ରହନ୍ତେ ବା କିପରି ? ଜ୍ଞାନ ଓ ବଳ ବି କେହି କାହାର ପରିଚିତ ନୁହନ୍ତି। ଏଣେ ମଣିଷ ପାଖରେ ଥିବା ଯଶ ତା' ପୂର୍ବତନ ବନ୍ଧୁ ଜ୍ଞାନକୁ ଝୁରି ହେଉଥାଏ। ଧନ ମଧ୍ୟ ସବୁବେଳେ ବଳ ବିଷୟରେ ଚିନ୍ତା କରି ଅତିଷ୍ଠ ହୋଇ ପଡୁଥାଏ। ଦିନେ ରାତି ଅଧରେ ଉଭୟେ ନିଜ ନିଜର ବନ୍ଧୁଙ୍କୁ ଖୋଜିବା ପାଇଁ ମନୁଷ୍ୟର ଘର ଛାଡ଼ି ଚାଲିଗଲେ।



# କାଗଜ ଡଙ୍ଗା

ଶ୍ରୀ ବାସୁଦେବ ଥାଟ୍ଟୋଇ

ଗଛ ପତରରେ ସବୁଜ ସଙ୍କେତ
ଘାସରେ ସାଧବ ବୋହୂ
କ୍ଷେତ ବଗିଚାରେ ସୁନା ସବୁଜିମା
ପାଣିରେ ପୂରିଲା ଡେଉ,
ଆସିଛି ବରଷା ରାଣୀ-
ମାଟିରେ ବତର ଫୁଲରେ ଅତର
ପ୍ରାଣରେ ପୁଲକ ବୁଣି

ଆକାଶ ଛାତିରେ କଳା ମେଘମାଳା
ସୂରୁଯ ଗଲେଣି ଲୁଚି
ବିଜୁଳି ଆଲୁଅ ଘଡ଼ଘଡ଼ି ବାଜା
ବେଙ୍ଗୁଲୀ ଖେଳୁଚି ପୁଚି,
ଘନ ଘଞ୍ଚ ଗିରି ବଣ-
ବଗୁଲୀ ଡାକିକି କହୁଛି ବଗକୁ-
"କରିଛି ମାଛ ତିଅଣ"॥

ମୁଣ୍ଡଫଟା ଖରା ମୁଣ୍ଡରୁ ହଟିଛି
ଚଷାପୁଅ ଗାଏ ଗୀତ
ମାଟି ସାଙ୍ଗେ ମାଟି ହୋଇ ହିଡ଼ ମୁଣ୍ଡେ
ଠେକା ଖୋଲି ଖାଏ ଭାତ,
ବଉଦ ଉଢ଼ାଳେ ରହି-
ସୂରୁଯ କହୁଛି କେତେ ମୁଁ ଜଳିଲି
ବରଷା ଆଣିବା ପାଇଁ ॥

ଗଡ଼ିଆ ପୋଖରୀ ନଦୀ, ନାଳ, କୂଅ
ପୂରିଗଲା ପରେ ପେଟ
ଝିପିଝିପି ବର୍ଷା ଝଡ଼ି ବଢ଼ିଗଲେ
ପଚପଚ କଲା ବାଟ,
ଝଡ଼ିପୋକମାନେ ଯେତେ-
ଉଡ଼ିଲେ ଏମିତି ଭାବିଲେ ପୃଥିବୀ
ଆମପାଇଁ ଅବା କେତେ!

ବରଷାରାଣୀ ତ ଇନ୍ଦ୍ରରାଜା ଝିଅ
ସରଗର ଅପସରୀ
ସକଳ ଜୀବର ପ୍ରାଣ-ପ୍ରତିଷ୍ଠାତା
କିଏ ହବ ତମ ପରି ?

ତମ ହାତେ ଗଢ଼ାଭଙ୍ଗା-
ବୁଡ଼ାଇ ଦିଅନା ଭାସିଯାଉ ଆମ
ସ୍ୱପ୍ନର କାଗଜ ଡ଼ଙ୍ଗା ॥

*ଭାରତୀୟ ଜୀବନ ବୀମା ନିଗମ, ଲିଙ୍କରୋଡ଼, ଶାଖା-୨, କଟକ-୧୨* ⚘⚘

---

ସେହିଦିନଠାରୁ ମନୁଷ୍ୟ ଅସହାୟ ହେଲା ଏବଂ ସ୍ଥିର କଲା କଦାପି ଯଶ ଓ ଧନ କିମ୍ବା ଜ୍ଞାନ ଓ ବଳକୁ ଏକାଠି ଭୃତ୍ୟ ରୂପେ ନିଯୁକ୍ତି ଦେବନାହିଁ। ସେହିଦିନଠାରୁ ଯଶ ଓ ଜ୍ଞାନ କିମ୍ବା ଧନ ଓ ବଳ ମନୁଷ୍ୟର ସହଚର ରୂପେ କାର୍ଯ୍ୟ କଲେ।

*ମଙ୍ଗଳପୁର, କୁରୁଜଙ୍ଗା, ଚାନ୍ଦୋଳ, କଟକ- ୭୫୪୨୦୮*

ଧନ୍ଦାର ଉତ୍ତର- ଅଗଷ୍ଟ ପନ୍ଦର



ଶ୍ରୀ ଅନ୍ତର୍ଯ୍ୟାମୀ ଲେଙ୍କା

'ପ୍ରକୃତରେ ଯାହା ଦିଶେ ଜକ୍‌ଜକ୍,
ପ୍ରକୃତରେ ତାହା ନୁହଁଇ କନକ ।।'

କନକ ବା ସୁନା ଆଖିକୁ ଝଲସାଇଦିଏ । ତାର ଚିକ୍‌ଚିକ୍ କରୁଥିବା ରୂପରେ ମନକୁ ମୋହିନିଏ ଏବଂ ତାହା ପ୍ରତି ମଣିଷ ଆକର୍ଷିତ ହୋଇପଡ଼େ । ମାତ୍ର ଏକଥା ଆମେ ଭୁଲିଯାଉ ଯେ ଜକ୍‌ଜକ୍ କରୁଥିବା ସୁନା ଭଳି ଦେଖାଯାଉଥିବା ଜିନିଷଟି ସବୁବେଳେ ସୁନା ହୋଇ ନ ପାରେ ।

ଏକଥା ଲେଖିବା ବେଳକୁ ବହୁ ଦିନର ଘଟଣାଟି ମନେପଡୁଛି--

ମୋର ଜଣେ ଓକିଲ ବନ୍ଧୁ ଥିଲେ । ସେ ମଧ୍ୟ ମୋର କେତେକ କେଶ୍‌ରେ ମୋର ଓକିଲ ଥିଲେ । ମୋର ତାଙ୍କ ଘରକୁ ଯିବାଆସିବା ଲାଗି ରହିଥିଲା । ଥରେ ମୁଁ ଯାଇ ଦେଖେ ତ ସେ ଦୁଇପ୍ରାଣୀ ମନ ଦୁଃଖରେ ବସିଛନ୍ତି ।

ଆରେ ଭାଇ କଥା କ'ଣ ? କିଛି ସମୟ ପରେ ସେ ଉଠି ଯାଇ ଗୋଟେ ସୁନା ହାର ସାମନାରେ ଥୋଇ ଦେଇ ଟିକିଏ ଶୁଖିଲା ହସ ହସି କହିଲେ, ''ଏଇଟା କ'ଣ ?'' ''ଏଇଟା ତ ସୁନାହାର ପରି ଦେଖାଯାଉଛି, ମାତ୍ର ଏହା ସୁନା କି ନକଲି ମୁଁ ତ କହିପାରିବି ନାହିଁ।'' ଏବେ ଅସଲ କଥା ତୁମେ କୁହ ।

ସେ କହିଲେ, ''ପ୍ରାୟ ଦଶ ବର୍ଷ ତଳେ ଦଶ ଭରି ଓଜନର ଏହି ହାରକୁ ଜଣେ ଠକ ଠାରୁ ଆମ ଶ୍ରୀମତୀ ମୋ କଥା ନ ମାନି କିଣିଥିଲେ । ଏବେ ଭାଣେଜୀର ବିବାହ ପାଇଁ ଖଣ୍ଡେ ଅଳଙ୍କାର ଦେବା ଉଦ୍ଦେଶ୍ୟରେ ଏଥିରୁ କିଛି ଅଂଶ କାଟି ଅଳଙ୍କାର ଗଢ଼େଇବା ପାଇଁ ବଣିଆ ପାଖକୁ ଯାଇଥିଲୁ । ସେ ପରୀକ୍ଷା କରି ଦେଖିଲେ ଯେ ସେହି ହାରର ଗୋଟିଏ ପଦକର ଅଳ୍ପ ଟିକେ ଅଂଶର ସୁନା ରହିଛି, ବାକି ସବୁ ପିତ୍ତଳ । ''ମୁଁ ଏକଥା ଶୁଣି ତାଙ୍କ ଦୁଃଖରେ ଭାଗ ଦେବା କଥା ଭୁଲିଯାଇ ଫେଁ କିନା ହସିଦେଇ ମୋର ପ୍ରକୃତିବଶତଃ ଏହି ଡଗଟିକୁ ବୋଲିଦେଇ କହିଲି, ''ଏକଥା କ'ଣ ତମକୁ ମାଲୁମ ନ ଥିଲା ?'' ଆମ ନାରୀମାନଙ୍କର ଯୁଗ ଯୁଗ ଧରି ସୁନା ପ୍ରତି ମୋହ ଏବଂ ଏଥି ସହ ଅଳ୍ପ ମୂଲ୍ୟରେ ବହୁତ କିଛି ପାଇବାର ମାନସିକତା ବେଳେ ବେଳେ ଏପରି ଦୁଃଖ ଆଣିଦେଇ ଥାଏ ।

ଏକଥା କେବଳ ସୁନା ପାଇଁ ନୁହେଁ, ଅନ୍ୟ ଘଟଣା ପାଇଁ ମଧ୍ୟ ପ୍ରଯୁଜ୍ୟ ହୋଇଥାଏ । ଏଥିପାଇଁ ବହୁତ ନଜିର ଅଛି । ତେବେ ବର୍ତ୍ତମାନର ଦେଶର ଅବସ୍ଥାକୁ ଦେଖି ଗୋଟିଏ କାହାଣୀ ଦେବାକୁ ଯାଉଛି, ଯାହାକୁ ବହୁ ବର୍ଷ ତଳେ ଚକ୍ରବର୍ତ୍ତୀ ରାଜଗୋପାଳଚାରୀ ଲେଖିଥିଲେ । ଏହାର ସାର୍ବଜନୀନ ଓ ସର୍ବକାଳୀନ ଆବେଦନ ଆଜି ମଧ୍ୟ ଅନାହତ ରହିଥିବାରୁ ନୂଆ ପିଢ଼ିର ପାଠକମାନଙ୍କ ପାଇଁ ଏହାକୁ ସାମିଲ କରୁଛୁ--

ସବ୍‌କଲେକ୍ଟର ଶ୍ରୀଯୁକ୍ତ ସୀତାନାଥନ୍ ମାସକୁ ବାରଶହ ଟଙ୍କା ଦରମା ପାଉଥିଲେ; ମାତ୍ର ତାଙ୍କର

ପାରିବାରିକ ଜୀବନ ସେତେ ସ୍ୱଚ୍ଛଳ ନ ଥିଲା । ସେ ଏତେ ଟଙ୍କା ଉପାର୍ଜନ କରୁଥିଲେ ହେଁ ବଡ଼ ଅସୁବିଧାରେ ଚଳୁଥିଲେ । କାହିଁକି ଏତେ ଅସୁବିଧା ? ସାହି ଓ ସହରର ଲୋକେ ତାଙ୍କୁ କେନ୍ଦ୍ର କରି ନାନା ଆଲୋଚନା ସମାଲୋଚନା କରୁଥିଲେ । 'ଛାଡ଼, ଲୋଭୀଟାଏ' କହି ଉଡ଼ାଇ ଦେଉଥିଲେ ।

ସ୍ୱାମୀ ଓ ସ୍ତ୍ରୀ ଉଭୟେ ସୁଖୀ ଥିଲେ । ତାଙ୍କର ସାଂସାରିକ ଜୀବନ ହସଖୁସିରେ ଅତିବାହିତ ହେଉଥିଲା । ପ୍ରତି ମାସରେ ଦରମା ପାଇବା ସାଙ୍ଗେ ସାଙ୍ଗେ ଶ୍ରୀଯୁକ୍ତ ସୀତାନାଥନ୍ ନଅଶହ ଟଙ୍କା ବିଲାତକୁ କାହିଁକି ଓ କାହା ପାଖକୁ ପଠାଉଥିଲେ, ଯାହାକି ତାଙ୍କ ସ୍ତ୍ରୀଙ୍କ ପାଖରେ ରହସ୍ୟ ହୋଇ ରହିଯାଉଥିଲା । ପ୍ରଥମେ ପ୍ରଥମେ ସେ ମନେମନେ ଭାବୁଥିଲେ ତାଙ୍କର ସ୍ୱାମୀ ବିଲାତରେ କେଉଁ ଏକ ବଡ଼ ବ୍ୟାଙ୍କ୍‌ରେ ଟଙ୍କା ଜମା କରାଉଛନ୍ତି , ମାତ୍ର ପରେ ପରେ ସେ ଜାଣିପାରିଲେ ଯେ ସେ ଯାହା ଭାବୁଛନ୍ତି, ତାହା ଠିକ୍ ନୁହେଁ । ସ୍ତ୍ରୀ ସ୍ୱାମୀଙ୍କର ନିତିଦିନିଆ କାର୍ଯ୍ୟକଳାପରୁ ହୃଦୟଙ୍ଗମ କରିଥିଲେ, ଟଙ୍କା ଜମା କରିବା ସ୍ୱାମୀଙ୍କର ପ୍ରକୃତି କିମ୍ବା ପ୍ରବୃତ୍ତି ନ ଥିଲା ।

ଦିନେ ଶ୍ରୀଯୁକ୍ତ ସୀତାନାଥନ୍ ତାଙ୍କ ସ୍ତ୍ରୀଙ୍କୁ କହିଲେ ଯେ ବିଲାତରେ ଥିବା ସମୟରେ ଅନେକ ଟଙ୍କା ଋଣ କରିଥିଲେ, ଯାହାକି ପରିଶୋଧ କରିବା ପାଇଁ ସେ ପ୍ରତି ମାସରେ କିଛି ନା କିଛି ଟଙ୍କା ପଠାଉଛନ୍ତି । ତାହା ତାଙ୍କ ସ୍ତ୍ରୀ ବିଶ୍ୱାସ କରିପାରିଲେ ନାହିଁ । କାରଣ ସେ ବିଲାତରେ ପଢୁଥିବା ସମୟରେ ତାଙ୍କର ଆବଶ୍ୟକ ଟଙ୍କା ରୀତିମତ ଏଠାରୁ ପଠାଇ ଦିଆଯାଉଥିଲା । ସ୍ତ୍ରୀ ଯେତେବେଳେ ସ୍ୱାମୀଙ୍କୁ ସେ ଋଣ ବିଷୟରେ କିଛି ପଚାରି ବସନ୍ତି, ସାଙ୍ଗେ ସାଙ୍ଗେ ସ୍ୱାମୀ ସେକଥାକୁ ଏଡ଼ାଇଦେବା ପାଇଁ ଅନ୍ୟ କଥା ପ୍ରସଙ୍ଗର ଅବତାରଣା କରନ୍ତି । ସ୍ୱାମୀ ବିଲାତରେ ରହୁଥିବା ସମୟରେ ତାଙ୍କର ସ୍ତ୍ରୀ ତାଙ୍କ ବିଷୟରେ ଅନେକ କଥା ଶୁଣିବାକୁ ପାଇଥିଲେ ଏବଂ ତାହା ତାଙ୍କ ମନରେ ସନ୍ଦେହ ଭାବ ଆଣିଥିଲେ ହେଁ ସ୍ୱାମୀଙ୍କର ଅନାବିଳ ପ୍ରେମ ତାଙ୍କୁ ସନ୍ଦେହର ଅବସର ଦେଇ ନ ଥିଲା ।

ଶ୍ରୀଯୁକ୍ତ ସୀତାନାଥନ୍ ତାଙ୍କ ଶ୍ୱଶୁରଙ୍କର ପଇସାରେ ବିଲାତ ଯାଇଥିଲେ ଏବଂ ସେଠାରେ ତିନିବର୍ଷ କାଳ ରହି ଆଇ.ସି.ଏସ୍. ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ସ୍ୱଦେଶ ଫେରିଥିଲେ । ସେ ବିଲାତକୁ ଯିବା ସମୟରେ ତାଙ୍କର ପତ୍ନୀଙ୍କୁ ୧୯ ବର୍ଷ ହୋଇଥିଲା । ସେ ସୁରୂପା ଏବଂ ଗୁଣବତୀ ଥିଲେ । କେବଳ ପୁରାତନ ଢଙ୍ଗର ପୋଷାକ ଓ ଅଳଙ୍କାର ବ୍ୟବହାର କରୁଥିଲେ । ପତ୍ନୀ ଭାବୁଥିଲେ ତାଙ୍କୁ ପୁରାତନ ଭାରତୀୟ ବେଶଭୂଷାରେ ତାଙ୍କର ସ୍ୱାମୀ ଦେଖିଲେ ଅଧିକ ଖୁସି ହେବେ । କିନ୍ତୁ ବିଚରା ସୀତାନାଥନ୍ ବେଳେବେଳେ ଭାବୁଥିଲେ ଯଦି ତାଙ୍କର ପତ୍ନୀ ସେହି ପୁରାତନ ଯୁଗର ବସଣୀ ଏବଂ କର୍ଣ୍ଣଫୁଲ ନ ପିନ୍ଧନ୍ତେ, ବୋଧହୁଏ ଅଧିକ ସୁନ୍ଦର ଦେଖାଯା'ନ୍ତେ । ହାତରେ ପତଳା କାଚ ପିନ୍ଧିଲେ କେମିତି ହୁଅନ୍ତା ? ଲମ୍ବା ଲମ୍ବା ହାତ ଥିବା ବ୍ଲାଉଜ ନ ପିନ୍ଧିଲେ ସେ ଅଧିକ ରୂପବତୀ ଓ ସୁନ୍ଦରୀ ଦେଖାଯାଆନ୍ତେ । କିନ୍ତୁ ସେ ମଧ୍ୟ ଭାରତୀୟ ପ୍ରାଚୀନ ପରମ୍ପରା ପ୍ରତି ଆସକ୍ତ ଥିଲେ ଏବଂ ମନେମନେ ଯାହା ଭାବୁଥିଲେ, ତାହା ସେ ପତ୍ନୀଙ୍କ ସମ୍ମୁଖରେ ବ୍ୟକ୍ତ କରିପାରୁ ନ ଥିଲେ ।

ସବୁ ନାରୀ ନିଜକୁ ସଜାଇବାର କଳା ଜାଣନ୍ତି । କେମିତି ପୋଷାକ ପିନ୍ଧିଲେ, କିପରି ଅଳଙ୍କାର ବ୍ୟବହାର କଲେ ଅଧିକ ସୁନ୍ଦରୀ ଦେଖାଯିବେ, ସେକଥା ତାଙ୍କୁ

ଅଧିକ ଜଣା । ତେଣୁ ଏକଥାଗୁଡ଼ାକ ମନେମେନ ସଂକଳ୍ପ କରି ସୀତାନାଥନ୍ ଖୁସି ହେଉଥିଲେ ଏବଂ ସେ ବିଲାତରୁ ଫେରିବା ପରେ ସ୍ତ୍ରୀଙ୍କ ରୂପପ୍ରସାଧାନ ବିଷୟରେ ଚିନ୍ତା କରିବେ ବୋଲି କଳ୍ପନା କରୁଥିଲେ ।

ସୀତାନାଥନ୍ ବିଲାତରେ ଦେଖିଲେ ଖାଲି ଆଧୁନିକ ସଭ୍ୟତା । ଯେଉଁ ଦିଗକୁ ଦେଖିଲେ ଖାଲି ଆଧୁନିକ ସଭ୍ୟତା । ଶରୀରକୁ କେମିତି କଲେ ସୁନ୍ଦର ଦେଖାଯିବ, କେମିତି ପୋଷାକ ପିନ୍ଧିଲେ ଅଧିକ ଅଧିକ ଲୋଭନୀୟ ହୋଇପାରିବ, କେମିତି ଡଙ୍ଗରେ ଚାଲିବାକୁ ହେବ, କଥା କହିବାକୁ ହେବ-- ବିଲାତ ନାରୀମାନଙ୍କ ଠାରେ ସେ ସବୁ ଦେଖୁଥିଲେ । ବିଲାତ ତାଙ୍କୁ ଇନ୍ଦ୍ରଲୋକ ପରି ମନେହେଲା । କିଛି ଦିନ ଭିତରେ ସେହି ଇନ୍ଦ୍ରଭୁବନର କୌଣସି ଗୋଟିଏ ପରୀ ତାଙ୍କର ଖୁବ୍ ନିକଟକୁ ଆସିଗଲା । ନିଜ ଦେଶର ସୁନ୍ଦରୀ ସ୍ତ୍ରୀକୁ ଛାଡ଼ି ସେ ଏଠାକୁ ଚାଲିଆସିଥିଲେ ।



ମନେ ମନେ ସୀତାନାଥନ୍ ଠିକ୍ କରିନେଲେ ଯେ ସେହି ସୁନ୍ଦରୀ ସ୍ତ୍ରୀଟିକୁ ସେ ବିବାହ କରିବେ । ତିନି ସପ୍ତାହ ମଧ୍ୟରେ ସେ କାର୍ଯ୍ୟ ମଧ୍ୟ ଶେଷ ହୋଇଗଲ । । ଅଧଘଣ୍ଟା ଭିତରେ ଚାହିଁଲେ ମଧ୍ୟ ବିଲାତରେ ବିବାହ କାର୍ଯ୍ୟ ସମ୍ପନ୍ନ ହୋଇଯିବ । କଥାବାର୍ତ୍ତା ଜରିଆରେ ସେ ନିଜକୁ ଅବିବାହିତ ବୋଲି ପ୍ରମାଣ କରି ସାରିଥାନ୍ତି, ଏବଂ ସେହି ଅସତ୍ୟ କଥା ଠିକ୍ ନୁହେଁ ବୋଲି କହି ପାରୁ ନ ଥା'ନ୍ତି । ସେ ନିଜକୁ ଅବିବାହିତ ବୋଲି ସରକାରୀ କୋର୍ଟରେ ମଧ୍ୟ ମାନି ନେଇଥା'ନ୍ତି ।

କିନ୍ତୁ ଅସୁବିଧାବଶତଃ ସୀତାନାଥନ୍ ଏବଂ ସେହି ପରୀ, ଦୁହେଁ ଏକତ୍ର ସ୍ୱାମୀସ୍ତ୍ରୀ ହୋଇ ସାଂସାରିକ ଜୀବନଯାପନ କରିପାରିଲେ ନାହିଁ । କିଛି ଗୋଟିଏ ଉପାୟରେ ସେ ନିଜ ଦେଶକୁ ବେଶୀ ପଇସା ମଧ୍ୟ ପଠାଇବାକୁ ଲେଖିଥିଲେ ଏବଂ ତାଙ୍କ ଶଶୁର୍ ଟଙ୍କା ପଠାଇଦେଲେ । ଧୀରେ ଧୀରେ ସେହି ପରୀଟିର ସ୍ୱଭାବରେ କିଛି ପରିବର୍ତ୍ତନ ଲକ୍ଷ୍ୟ କଲେ । ପ୍ରଥମେ ପ୍ରଥମେ ସେ ଝିଅଟି ଯେଉଁ ଶାଳୀନତା, ନମ୍ରତା ଦେଖାଉଥିଲା, ଧୀରେ ଧୀରେ ତାହା ପରିବର୍ତ୍ତିତ ହେବାକୁ ଲାଗିଲା ଏବଂ ସାମାନ୍ୟ କଥାରେ ସେ ବିରକ୍ତି ପ୍ରକାଶ କରିବାକୁ ଲାଗିଲା; ମାତ୍ର ଝିଅଟି ତାଙ୍କୁ ଭଲ ଲାଗୁଥିଲା ।

କିଛିଦିନ ପରେ ଜାଣିବାକୁ ପାଇଲେ ଯେ ସେ ଝିଅଟିର ସୁନ୍ଦର ଓଠରେ ବାରମ୍ବାର ଗୋଟିଏ ଲାଲ୍ ରଂଗ ଲଗାହେଉଛି । ବିନା ରଂଗରେ ତା'ର ଓଠ ଶେତା ଦେଖା ଯାଉଛି । ତା'ର ବୟସ ଖୁବ୍ ପଛକୁ ଫେରିଗଲା ପରି ମନେହେଉଛି । ପରେ ସେ ଜାଣିଲେ ଯେ ସୁନ୍ଦରୀଟିର କେଶ ମଧ୍ୟ ନକଲି । ସେଦିନ ସୀତାନାଥନ୍ଙ୍କର ଯେଉଁ ଦୁଃଖ ହେଲା, ତାହା ସେ ଜୀବନରେ କେବେ ଅନୁଭବ କରି ନ ଥିଲେ । କେବଳ କେଶ ନୁହେଁ, ଭୂଲତା ଏବଂ ଅନ୍ୟାନ୍ୟ ଅଙ୍ଗପ୍ରତ୍ୟଙ୍ଗ କୃତ୍ରିମ ରଙ୍ଗରେ ରଙ୍ଗ କରାହେଉଥିଲା । ମାସେ ବିତିଗଲା ପରେ ସେ ସୁନ୍ଦରୀଟିର ମୁକ୍ତା ପରି ଚକ୍‌ଚକ୍ କରୁଥିବା ଦାନ୍ତ ସବୁ ବାକ୍ସରୁ ବାହାର କରୁଥିବାର ସେ ଦେଖିଲେ ।

ସୀତାନାଥନ୍ଙ୍କର ସହିଷ୍ଣୁତାର ସୀମା ପାର ହୋଇଗଲା । ନିଜ ବେକରେ ଦଉଡ଼ି ଦେଇ ଆତ୍ମହତ୍ୟା କରିବା ପାଇଁ ସେ ମନସ୍ଥ କଲେ । ଆରାମ ଚୌକିରେ ବିଶ୍ରାମ ନେଉ ନେଉ ଆଖି ବନ୍ଦ କରି ସେ ନିଜର ମାତୃଭୂମି ଭାରତବର୍ଷ ଏବଂ ଈଶ୍ୱରଙ୍କ ଚିନ୍ତାରେ ମଗ୍ନ ରହି

ଶୋଇପଡ଼ିଲେ । ନିଜର ପିଲାଦିନର ସବୁ କଥା ତାଙ୍କର ମନେପଡ଼ିଲା । ଯେପରି ତାଙ୍କର ସ୍ୱର୍ଗୀୟା ମା' ସାମନାରେ ଠିଆ ହୋଇଛି । ପରେପରେ ସେ ଆଉ ଗୋଟିଏ ଦୃଶ୍ୟ ଦେଖିବାକୁ ପାଇଲେ । ତାଙ୍କର ସ୍ତ୍ରୀ ପାର୍ବତୀ, ଯେପରିକି ତାଙ୍କ ପାଇଁ ତପ ଆଚରଣ କରୁଛି ।

ସୀତାନାଥନ୍‌ଙ୍କ ଆଖିରୁ ଲୋତକ ବୋହିବାକୁ ଲାଗିଲା । ପୁଣି ସେ ଦେଖିବାକୁ ପାଇଲେ ଯେ ବିଲାତି ପରୀଟି ତା'ର ନକଲି ଚେହେରାରେ ସୀତାନାଥନ୍‌ଙ୍କ ମୂର୍ଖତା ପାଇଁ ତାଙ୍କୁ ପରିହାସ କରୁଛି ।

ଛିଃ ! ଗୋଟିଏ ଅଯୋଗ୍ୟା ନାରୀ ପାଇଁ କ'ଣ ସେ ଆତ୍ମହତ୍ୟା କରିବେ ? ତାଙ୍କର ବିବାହିତ ସ୍ତ୍ରୀ ପ୍ରତି ସେ ତ ଅବିଚାର କଦାପି କରିପାରିବେ ନାହିଁ । କେତେ ବଡ଼ ଭୁଲ୍‌ଟିଏ ସେ କରିବାକୁ ଯାଉ ନ ଥିଲେ ସତେ ? ପରେ ପରେ ପୋଷାକପତ୍ର ପିନ୍ଧି ସେ ବାହାରକୁ ବାହାରିଲେ ।

ଏଣେତେଣେ ବୁଲୁବୁଲୁ ସେ ଥକିଗଲେ । ତା'ପରେ ସେ ଗୋଟିଏ ପାଦ୍ରୀ ଅଧ୍ୟାପକଙ୍କ ପାଖରେ ବିଫଳ ମନୋରଥ ହୋଇ ପହଞ୍ଚିଲେ, ଯିଏକି ତାଙ୍କୁ ଭାରତରେ ପଢ଼ାଉଥିଲେ । ବିନା ସଂକୋଚରେ ସବୁ ସତକଥା ତାଙ୍କ ସମ୍ମୁଖରେ ବ୍ୟକ୍ତ କରି କାନ୍ଦି ପକାଇଲେ । ତାଙ୍କର ଦୁଃଖରେ ଅଧ୍ୟାପକ ମହାଶୟ ମର୍ମାହତ ହେଲେ ଏବଂ ତାଙ୍କର ପୁରାତନ ଛାତ୍ରକୁ ଏ ବିପଦରୁ ରକ୍ଷା କରିବା ପାଇଁ ଯତ୍ନବାନ ହେଲେ ।

ସେ ସେହି ପରୀଟି ସହିତ କଥାବାର୍ତ୍ତା ହେଲେ । ସୀତାନାଥନ୍ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲା ପରେ ପ୍ରତି ମାସରେ ତା'ପାଖକୁ କିଛି ନା କିଛି ଟଙ୍କା ପଠାଇବେ ବୋଲି ତାକୁ ବୁଝାଇ ଗୋଟିଏ ଚୁକ୍ତିନାମା ଦୁହିଙ୍କ ମଧ୍ୟରେ ସ୍ୱାକ୍ଷରିତ ହୋଇଗଲା ।

ବଡ଼ କଷ୍ଟରେ ସେ ଆଇ.ସି.ଏସ୍. ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ଭାରତକୁ ପ୍ରତ୍ୟାବର୍ତ୍ତନ କଲେ । ନିଜ ସହରକୁ ଆସି ପରମ୍ପରା-ଗତ ସଂସ୍କୃତିକୁ ଭୁଲି ନିଜର ବିବାହିତା ସୁନ୍ଦରୀ ସ୍ତ୍ରୀଙ୍କୁ ଆଲିଙ୍ଗନ କଲେ । ପ୍ରାଚୀନ ବେଶଭୂଷା ଏବେ ତାଙ୍କୁ ଶାଶ୍ୱତ ସୌନ୍ଦର୍ଯ୍ୟ ପରି ମନେହେଲା ।



ସୀତାନାଥନ୍‌ଙ୍କ ମନେହେଲା, ଯେପରି ଜଣେ ବ୍ୟକ୍ତି ପାଣିରେ ବୁଡ଼ି ମରିଯାଉଥିବା ସମୟରେ ବହୁ କଷ୍ଟରେ ପୁଣି ଥରେ ନୂତନ ଜୀବନ ଲାଭ କଲା । ଲମ୍ବ ଭାରତୀୟ ଶାଢ଼ୀ, ଲମ୍ବା ହାତବାଲା ବ୍ଲାଉଜ, ପ୍ରାକୃତିକ ସୌନ୍ଦର୍ଯ୍ୟ ତାଙ୍କୁ ସଭ୍ୟତାର ନୂଆ ରୂପ ଦେଲା । ପଇସା ହୁଏତ ସଞ୍ଚୟ ହୋଇପାରିଲା ନାହିଁ, କିନ୍ତୁ ପ୍ରେମର ବିଜୟ ହେଲା । ଜୀବନ ପାଇଁ ଆଉ କ'ଣ ପ୍ରୟୋଜନ ?

ଅତଏବ, କୌଣସିଟିକୁ ଠିକଣା ଭାବେ ପରଖ ନ କରି, ବାହ୍ୟ ଦୃଶ୍ୟରେ ଭଳିଯାଇ ସିଦ୍ଧାନ୍ତରେ ପହଞ୍ଚିଯିବା ବୁଦ୍ଧିମାନର କାର୍ଯ୍ୟ ନୁହେଁ । ଏଥିନେଇ ପଛରେ ପସ୍ତାଇବା କେବଳ ସାର ହୋଇଥାଏ । ଏବେବି ବହୁ କ୍ଷେତ୍ରରେ, ବହୁଳ ଭାବରେ ଲୋକମାନେ ଆମର ପରମ୍ପରା, ସଂସ୍କୃତି, ଆଚାରବିଚାରକୁ ପଛରେ ଫିଙ୍ଗିଦେଇ ପାଶ୍ଚାତ୍ୟ ଚାକଚକ୍ୟରେ ଆକୃଷ୍ଟ ହେବାରେ ଲାଗିଛନ୍ତି । ଭଲକଥା, ଯାହାକି ଆମର ଉପକାର ସାଧନ କରିପାରିବ, ସେସବୁକୁ ଅନୁକରଣ ନ କରି ଚାକଚକ୍ୟ ଉପରେ ଗୁରୁତ୍ୱ ଦେଇ ଚାଲିଛନ୍ତି । ତାହା ତ ଆମର କୌଣସି ଉଦ୍ଦେଶ୍ୟ ସାଧନ କରିବ ନାହିଁ; ବରଂ କୁପଥରେ

ଶୀଘ୍ର ଚାଲିଯିବାରେ ସାହାଯ୍ୟ କରିବ। ଆମ୍ଭେମାନେ 'ବାଘର ଲାଞ୍ଜ ନ ହୋଇ, ବିଲେଇର ମୁଣ୍ଡ ହୋଇ' ନିଜର ସ୍ୱାଭିମାନ ବଜାୟ ରଖିଲେ ଆମ୍ଭମାନଙ୍କର ବ୍ୟକ୍ତିଗତ ଲାଭ ହେବା ସହ ଦେଶର ଟେକ ରହିବ ଓ ଯେଉଁ ଅଶାନ୍ତ ବାତାବରଣ ଦ୍ୱାରା ଶ୍ୱାସରୁଦ୍ଧ ହେଉଛେ, ତାହା ନିଶ୍ଚୟ ଧୀରେ ଧୀରେ ପଛଘୁଞ୍ଚା ଦେଇ ଶେଷରେ ଉଭାଇଯିବ, ଏଥିରେ ସନ୍ଦେହ ନାହିଁ।

*ରାଜାବଗିଚା, କଟକ-୯*



## ଶିଶୁକୁ ନ ଭାବ ଶିଶୁଟିଏ

ସ୍ୱାମୀ ଜୟଦେବ ଭାରତୀ

(୧)

ଶିଶୁକୁ ଭାବନା କନ୍ୟାଟିଏ – ସିଏ ଆଲୋକର ବନ୍ୟାଟିଏ
ଆଶ୍ୱାସନାର ସ୍ପର୍ଶ ମାଗେ
ସମ୍ଭାବନାର ଦୁର୍ଗଟିଏ ସେ
ଶିଶୁରୂପୀ ନବଦୁର୍ଗାଟିଏ
ଶିଶୁକୁ ନ ଭାବ ଶିଶୁଟିଏ।

(୨)

ଶିଶୁକୁ ନ ଭାବ ଝିଅଟିଏ, ସିଏ ହେବ କାହା ବୋହୂଟିଏ
ଟିକେ ଶ୍ରଦ୍ଧା ପରଶ ଲୋଡ଼େ
ଭାବନା ଗୋ ତାକୁ ପରର ପରିବା
କୂଳବଧୂ ମାତା – ସୀତାଟିଏ
ଶିଶୁକୁ ନ ଭାବ ଶିଶୁଟିଏ।

*ଆଶ୍ରମ ଶାନ୍ତିଧାମ- ଧଣ୍ଡାମୁଣ୍ଡା, ବଲାଙ୍ଗୀର- ୭୬୭୦୨୮*






ଶ୍ରୀମତୀ ମାଧବୀଲତା ମଲ୍ଲିକ

ବାସ୍ତବରେ ଗୋଲମରିଚ ଖାଦ୍ୟଦ୍ରବ୍ୟକୁ ସ୍ୱାଦିଷ୍ଟ କରିଥାଏ। ଏତଦ୍‌ବ୍ୟତୀତ ଏହା ମଧ୍ୟ ସ୍ୱାସ୍ଥ୍ୟ ପ୍ରତି ବିଶେଷ ଉପଯୋଗୀ।

✯- ଗୋଲମରିଚ ଶରୀରର ପାକବ୍ୟବସ୍ଥାକୁ ସୁସ୍ଥ ରଖିବାରେ ବିଶେଷ ସହାୟକ ହୋଇଥାଏ।

✯- ଗୋଲମରିଚ ଗୁଣ୍ଡକୁ ପାଟିରେ ପକାଇ କିଛି ଥଣ୍ଡା ପାଣି ପିଇଲେ ସହଜରେ ଖାଦ୍ୟ ହଜମ ହୁଏ।

✯- ନାଲି ଚା'ରେ ଗୋଲମରିଚ ଗୁଣ୍ଡ ପକାଇ ଚା' ପ୍ରସ୍ତୁତ କରି ପାନ କଲେ ମନ ସତେଜ ରୁହେ।

✯- ଗୋଲମରିଚ ଆଣ୍ଟିଅକ୍ସିଡାଣ୍ଟ୍ ଗୁଣରେ ଭରପୂର୍ ଥିବା ଏକ ମସଲା। ଏହା ମୁଖ୍ୟତଃ ବୃହଦନ୍ତ୍ରରେ ଥିବା ଜୀବାଣୁମାନଙ୍କ ବୃଦ୍ଧିକୁ ସହଜରେ ରୋକିଥାଏ।

✯- ଆମେ ଜାଣୁ କେରଳର ଲୋକମାନେ ସକାଳ ହେଲେ କଫିରେ ଗୋଲମରିଚ ଗୁଣ୍ଡ ପକାଇ ସେବନ କରିଥା'ନ୍ତି। ଫଳରେ ସେମାନେ, ସକାଳର ସତେଜ କର୍ମମୟ ଜୀବନ ଆରମ୍ଭ କରିଥା'ନ୍ତି।

✯- ଅଣ୍ଟା ଧରିଲେ ଗୋଲମରିଚ ଗୁଣ୍ଡକୁ ପାଟିରେ ପକାଇ ଉଷୁମ ପାଣି ପିଇଲେ ସହଜରେ ଅଣ୍ଟାଧରା ଦୂର ହୁଏ।

*ଫକୀରମୋହନ ସ୍ମୃତି ସଂସଦ, ଡିମିରି, ନୋଦା, କଟକ*



# କପ୍‌ର କିମିଆ

ଶ୍ରୀ ନିକୁଞ୍ଜ ବିହାରୀ ସାହୁ

ବିଜ୍ଞାନ ମେଳାରେ ଗୋଟିଏ ପ୍ରକଳ୍ପ ଦୃଷ୍ଟି ଆକର୍ଷଣ କଲା । ପ୍ରକଳ୍ପର ପୃଷ୍ଠଭୂମି ଆଧାରିତ ପୁରାଣର ଏକ ଲୋକପ୍ରିୟ ଉପାଖ୍ୟାନ ଉପରେ । କପ୍ ଆକୃତିର ପାତ୍ର ମଧ୍ୟରେ ଗୋଟିଏ ପାଦ ଉର୍ଦ୍ଧ୍ୱକୁ ଟେକି ଦଣ୍ଡାୟମାନ ରାଜା ବସୁଦେବ ଶିଶୁ କୃଷ୍ଣଙ୍କୁ ମସ୍ତକରେ ବହନ କରି --ସତେଅବା ଯମୁନା ପାର ହୋଇ ଗୋପପୁରରେ ପୁତ୍ରକୁ ପହଞ୍ଚାଇବାର ଦୁର୍ବାର ଲକ୍ଷ୍ୟ ନେଇ ଉଦ୍ୟତ । କପ୍‌ରେ ପାଣି ଢାଳିଲେ ଜଳସ୍ତର ସ୍ୱାଭାବିକ ଭାବେ ବୃଦ୍ଧି ପାଇ କ୍ରମେ ବସୁଦେବଙ୍କ ଉର୍ଦ୍ଧ୍ୱାସୀନ ପାଦ ଦିଗରେ ଉପରକୁ ଉଠେ । ମାତ୍ର ପାଦକୁ ସ୍ପର୍ଶ କରିବାର କ୍ଷଣିକ ପୂର୍ବରୁ ସମସ୍ତ ଜଳ ଅଚାନକ ପାତ୍ର ମଧ୍ୟରୁ ବାହାରକୁ ନିର୍ଗତ ହୋଇ ସମଗ୍ର ପାତ୍ରଟି ଶୁଷ୍କ ପାଲଟିଯାଏ । ଏହି ପରୀକ୍ଷାକୁ ବାରମ୍ବାର କଲେ ମଧ୍ୟ ଜଳ କଦାପି ମୂର୍ତ୍ତିଟିର ପାଦ ସ୍ପର୍ଶ କରି ପାରେନାହିଁ-- ସତେ ଯେପରି ଭଗବାନ କୃଷ୍ଣଙ୍କ ନିର୍ଦ୍ଦେଶକୁ ଅକ୍ଷରେ ଅକ୍ଷରେ ପାଳନ କରୁଥାଏ ଯମୁନା ନଈ ।

ଗ୍ରୀକ୍‌ମାନେ ଏହିଭଳି ଏକ ଖେଳନାକୁ 'ଟାଣ୍ଟାଲସ୍‌ଙ୍କ କପ୍' ବୋଲି କହନ୍ତି । କିମ୍ବଦନ୍ତୀ ଅନୁସାରେ ଫ୍ରିଜିଆର ରାଜା ଟାଣ୍ଟାଲସ୍ ନିଜ ପୁତ୍ରର ମାଂସକୁ ଦେବତାମାନଙ୍କୁ ସନ୍ତୁଷ୍ଟ କରିବା ନିମନ୍ତେ ଆହାରରେ ପରିବେଷଣ କରନ୍ତି । ଏଥିରେ ପିତା ଜିଉସ୍ କ୍ଷୁବ୍ଧ ହୋଇ ଟାଣ୍ଟାଲସ୍‌ଙ୍କୁ ତାଙ୍କର କ୍ଷୁଧା କଦାପି ଶାନ୍ତ ହେବନାହିଁ ବୋଲି ଅଭିଶାପ ଦେଇ ସର୍ବଦା ଜଳ ମଧ୍ୟରେ ଠିଆ ହୋଇ ରହିବାକୁ ନିର୍ଦ୍ଦେଶ ଦିଅନ୍ତି । ତୃଷାର୍ତ୍ତ ଟାଣ୍ଟାଲସ୍ ପ୍ରତିଥର ଜଳପାନ ନିମନ୍ତେ ଜଳପୃଷ୍ଠ ଆଡକୁ ମୁଖ ନେଲେ ଜଳସ୍ତର କମି କମି ଯାଏ ଏବଂ ତାଙ୍କର ପିପାସା କଦାପି ମେଣ୍ଟିପାରେ ନାହିଁ ।

ଟାଣ୍ଟାଲସ୍‌କପ୍ ଖେଳନାଟି ଏହିପରି-- ଏକ କପ୍ ମଧ୍ୟରେ ଆସୀନ ଅଭିଶପ୍ତ ଟାଣ୍ଟାଲସ୍ ମୂର୍ତ୍ତି । କପ୍‌ରେ ପାଣି ଢାଳିଲେ ତାହା କ୍ରମଶଃ ପୂର୍ଣ୍ଣ ହୁଏ ସତ, ମାତ୍ର କେବେହେଲେ ମୂର୍ତ୍ତିର ମୁଖ ସ୍ପର୍ଶ କରି ପାରେନାହିଁ । ମୁଖ ସ୍ପର୍ଶ କରିବାର ନିମିଷକ ପୂର୍ବରୁ ସମସ୍ତ ଜଳ ଅକସ୍ମାତ ପାତ୍ର ମଧ୍ୟରୁ ନିର୍ଗତ ହୋଇଯିବା ଦ୍ୱାରା ପାତ୍ରଟି ସଂପୂର୍ଣ୍ଣ ଜଳଶୂନ୍ୟ ହୋଇଯାଏ ।

ଉଭୟ ପ୍ରଦର୍ଶନର ଆଚରଣ କୌତୂହଳଜନକ ହେଲେ ମଧ୍ୟ କାର୍ଯ୍ୟପ୍ରଣାଳୀ ଏକା । ମୂର୍ତ୍ତି ମଧ୍ୟରେ ଗୁପ୍ତ ଭାବେ ଓଲଟା 'U' ଆକୃତିର ଏକ ବକ୍ରନଳୀ ଥାଏ, ଯାହାର ଗୋଟିଏ ପ୍ରାନ୍ତ କପ୍‌ର ଆଧାର ନିକଟରେ

ଥିଲାବେଳେ ଅନ୍ୟଟି ବାହାର ପଟେ ଥାଏ । ବିଜ୍ଞାନରେ ଏଭଳି ନଳୀକୁ ସାଇଫନ୍ (Siphon) କହନ୍ତି । ସାଇଫନ୍‌ର ବକ୍ର ଅଂଶ ପୂର୍ବବର୍ଣ୍ଣିତ ମୂର୍ତ୍ତି ଯଥା ରାଜା ବସୁଦେବ କିମ୍ବା ଟାଣ୍ଟାଲସ୍‌ର ଯଥାକ୍ରମେ ପାଦ ଓ ମୁଖ ପତନରେ ରହିଥିବାରୁ ପାତ୍ର ମଧ୍ୟରେ ଜଳ ଅତି ବେଶୀରେ ଏହି ଉଚ୍ଚତା ଯାଏଁ ପୂର୍ଣ୍ଣ ହୋଇପାରେ । ଜଳସ୍ତର ଏହି ଉଚ୍ଚତା ଅତିକ୍ରମ କରିବା ମାତ୍ରେ ସାଇଫନ୍‌ଟି ଭରିଯାଇ କାର୍ଯ୍ୟକାରୀ ହେବା ଦ୍ୱାରା ପାତ୍ର ମଧ୍ୟରୁ ସମସ୍ତ ଜଳ ବହାରକୁ ନିଷ୍କାସିତ ହୁଏ ।

12.4.05 Siphon systems showing pressure each side of fluid disc at X



ପାଇଖାନା ସଫେଇ ନିମନ୍ତେ ବ୍ୟବହୃତ ହେଉଥିବା ଫ୍ଲସ୍‌ଟାଙ୍କି (Flush Tank) ଅନୁରୂପ ପ୍ରଣାଳୀରେ କାର୍ଯ୍ୟ କରିଥାଏ । ଟାଙ୍କିଟି ସମ୍ପୂର୍ଣ୍ଣ ଭରିଗଲେ ସମସ୍ତ ଜଳ ସାଇଫନ୍ ଦେଇ ଜୋରରେ ପଦାକୁ ନିଷ୍କାସିତ ହୋଇ ବେସିନ୍‌ର ମଇଳା ସଫା କରେ ।

କୌଣସି ଅଦରକାରୀ ସାଲାଇନ୍ ବୋତଲରେ ପ୍ଲାଷ୍ଟିକ୍ ନଳୀକୁ ସାଇଫନ୍ ରୂପେ ବ୍ୟବହାର କରି ପିଲାମାନେ ଏହି ଚମତ୍କାର ଖେଳଣାଟିକୁ ନିଜେ ପ୍ରସ୍ତୁତ କରିପାରିବେ ।

*ଆଞ୍ଚଳିକ ବିଜ୍ଞାନ କେନ୍ଦ୍ର, ପଣ୍ଡିତ ଜବାହରଲାଲ ନେହେରୁ ମାର୍ଗ, ଭୁବନେଶ୍ୱର- ୭୫୧୦୧୩*

# ନିଷ୍କାମ ସେବକ

ଶ୍ରୀ ଗୋବିନ୍ଦ ପ୍ରସାଦ ଭଟ୍ଟାଚାର୍ଯ୍ୟ

ସବୁଦିନ ପରି ଆଜି ମଧ୍ୟ ସୋନା ଓ ମୋନା ଦୁଇଭଉଣୀ ସନ୍ଧ୍ୟାରେ ଠାକୁରଘରେ ପ୍ରାର୍ଥନା ସାରି, ମା'ଙ୍କଠାରୁ ଜେଜେଙ୍କ ପାଇଁ ପାନଖିଲଟିଏ ଧରି ଗପ ଶୁଣିବା ପାଇଁ ଜେଜେଙ୍କ ପାଖକୁ ଚାଲିଆସିଲେ । ଜେଜେ କହିଲେ, "ଆଜି କି ଗପ ଶୁଣିବ ?" ସୋନା କହିଲା, "ଆମ ବିଦ୍ୟାଳୟର ଗୋଟେ ଦୁଷ୍ଟପିଲା ହେଉଛି ବୈକୁଣ୍ଠ ବେହେରା । ଆଜି ଖେଳଛୁଟିରେ ଗୋଟିଏ ଶାନ୍ତପିଲା ସହିତ ମିଛରେ କନ୍ଦଳ କରି ତାକୁ ରାସ୍ତାରେ ଠେଲିଦେଲା । ସେ ପିଲାଟି ନିରୀହ, ଶାନ୍ତଶିଷ୍ଟ ପିଲା । ତା'ର ନାମ ବିଷ୍ଣୁ ପ୍ରସାଦ ଭୋଇ । ବୈକୁଣ୍ଠ ପେଲିଦେବାରୁ ବିଷ୍ଣୁ ପକ୍କାରାସ୍ତା ଉପରେ କଚାଡ଼ି ପଡ଼ିଲା । ତା'ଦେହ ଖଣ୍ଡିଆଖାବରା ହୋଇଗଲା । ଏହି ସମୟରେ ଜଣେ ବୁଢ଼ାଲୋକ ସାଇକେଲ୍‌ରେ ଯାଉଥିଲେ । ସେ ବିଷ୍ଣୁକୁ ସାଇକେଲ୍‌ରେ ବସାଇ ନିକଟରେ ଥିବା ଡାକ୍ତରବାବୁଙ୍କ ପାଖକୁ ନେଇଗଲେ । ଡାକ୍ତରବାବୁ ତା' କ୍ଷତଯାଗାକୁ ସଫା କରି ମଲମ ମାରି ଇଂଜେକ୍‌ସନ୍‌ଟିଏ ଦେଇଦେଲେ । ବିଷ୍ଣୁ ଡାକ୍ତରବାବୁଙ୍କ ସେବାରେ ଭଲ ହୋଇଗଲା ।"

ଜେଜେ କହିଲେ, "ଡାକ୍ତରବାବୁ ହେଉଛନ୍ତି ଆମ ସମାଜର ଜଣେ ସେବକ; ହେଲେ ସେମାନେ ସେବା ବାବଦରେ ପାରିଶ୍ରମିକ ନେଇଥାନ୍ତି ।" ସୋନା କହିଲା, "ବିନା ପାରିଶ୍ରମିକରେ ସେବକ ବିଷୟରେ ଆମକୁ ଗପଟିଏ କହିବ ?" ଜେଜେ କହିଲେ, "ସେବା



ଦୁଇପ୍ରକାର । ଗୋଟିଏ ସକାମ ସେବା ଓ ଅନ୍ୟଟି ନିଷ୍କାମ ସେବା । ଯେଉଁ ବ୍ୟକ୍ତି କିଛି କାମନା କରି ସେବା କରିଥାଏ, ତାକୁ ସକାମ ସେବା କୁହନ୍ତି । କିନ୍ତୁ ଯେଉଁ ବ୍ୟକ୍ତି କିଛି କାମନା ନ କରି ଆମର ସେବା କରେ ତାକୁ ନିଷ୍କାମ ସେବକ କୁହାଯାଏ ।

ଥରେ କନକପୁର ନାମକ ରାଜ୍ୟରେ ସୁମନ୍ତଦେବ ନାମରେ ଜଣେ ଧାର୍ମିକ ରାଜା ଥିଲେ । ସେ ପ୍ରଜାମାନଙ୍କର ସେବକ ଭାବେ ନିଜକୁ ନିୟୋଜିତ କରୁଥିଲେ । ଦିନେ ରାଜା, ପାତ୍ରମନ୍ତ୍ରୀ ଓ ସେନାପତିଙ୍କ ସହ ଜଙ୍ଗଲକୁ ଶିକାର ଉଦ୍ଦେଶ୍ୟରେ ଗଲେ । ଜଙ୍ଗଲରେ ଶିକାର କରୁକରୁ ହଠାତ୍ ଝଡ଼ବର୍ଷା ବିଜୁଳି ଘଡ଼ଘଡ଼ି ସହିତ ବଡ଼ ବଡ଼ କୁଆପଥର ବୃଷ୍ଟି ହେଲା । ଭୀଷଣ ଝଡ଼ବର୍ଷାରେ ରାଜା, ପାତ୍ର, ମନ୍ତ୍ରୀ ଓ ସେନାପତି ଯେତେ କଷ୍ଟ ପାଇଥିଲେ, ବଡ଼ ବଡ଼ କୁଆପଥର ବୃଷ୍ଟି ଫଳରେ ସେମାନଙ୍କର କଷ୍ଟ ଆହୁରି ବଳି ପଡ଼ିଥିଲା । କୁଆପଥର ମାଡ଼ରେ ଦେହସାରା ଚକଡ଼ା ଚକଡ଼ା ଫଳିଗଲା । ଏହି ସମୟରେ ଜଣେ କାଠୁରିଆ ଜଙ୍ଗଲକୁ କାଠ ସଂଗ୍ରହ ପାଇଁ ଆସିଥିଲେ । ରାଜାଙ୍କ ସହିତ ପାତ୍ରମନ୍ତ୍ରୀ ଓ ସେନାପତିଙ୍କ ଅବସ୍ଥା ଦେଖି ସେମାନଙ୍କୁ ନିକଟରେ ଥିବା ତାଙ୍କ କୁଡ଼ିଆରେ ବିଶ୍ରାମ କରିବାକୁ ଅନୁରୋଧ କଲେ । ରାଜା ମଧ୍ୟ କାଠୁରିଆଙ୍କ ଅନୁରୋଧ ରକ୍ଷା କରି ତା'ର କୁଡ଼ିଆରେ ଆଶ୍ରୟ ନେଲେ । କୁଡ଼ିଆରେ କାଠୁରିଆର ପରିବାରବର୍ଗ ରାଜା ଓ ପାତ୍ରମନ୍ତ୍ରୀଙ୍କ ସେବା କରି ଚିକିତ୍ସା ମଧ୍ୟ କରିଥିଲେ । ବଣର ସୁସ୍ୱାଦୁ ଫଳ ଓ ଗରମ କ୍ଷୀରରେ ରାଜା ଓ ତାଙ୍କ ପାତ୍ରମନ୍ତ୍ରୀମାନେ ଆଶ୍ୱସ୍ତ ହେଲେ । କାଠୁରିଆଙ୍କର ଅନୁରୋଧକ୍ରମେ ରାଜା, ପାତ୍ରମନ୍ତ୍ରୀ ଓ ସେନାପତି ତାଙ୍କ କୁଡ଼ିଆରେ ବିଶ୍ରାମ କଲେ ।

ସକାଳ ହେଲା । ରାଜା, ପାତ୍ରମନ୍ତ୍ରୀ ଓ ସେନାପତି ସାମାନ୍ୟ କାଠୁରିଆଟିର ସେବାରେ ସୁସ୍ଥ ହେଲେ ଏବଂ ରାଜା ସୁମନ୍ତଦେବ ସେ ପରିବାରକୁ କୃତଜ୍ଞତା ଜଣାଇ ବିଦାୟ ନେବା ପୂର୍ବରୁ କହିଲେ, "ତମ ଋଣ କରିଶୋଧ କରି ହେବନାହିଁ । ତମର ନାମ ଓ ଠିକଣା ଦିଅ । ରାଜପରିଷଦରେ ତମ ସେବାର ମହତ୍ତ୍ୱ ଗୁଣଗାନପୂର୍ବକ ସମ୍ବର୍ଦ୍ଧନା ଦିଆଯିବ ।" କାଠୁରିଆ ବିନୟ ହୋଇ କହିଲା, "ମହାରାଜ ! ସୃଷ୍ଟିକର୍ତ୍ତା ଏ ସମଗ୍ର ସୃଷ୍ଟିକୁ ନିର୍ମାଣ କରି ଆମର ସେବା ନିମିତ୍ତ ସୂର୍ଯ୍ୟ, ଚନ୍ଦ୍ର, ସାଗର, ପାହାଡ଼, ପର୍ବତ, ନଦନଦୀ ଏବଂ ସର୍ବୋପରି ମାଟିକୁ ମଧ୍ୟ ନିୟୋଜିତ କରିଛନ୍ତି । ଆମ ସେବା ପାଇଁ ସେମାନେ ସର୍ବଦା ନିଷ୍କାମ ସେବାରେ ନିୟୋଜିତ ହୋଇଥାନ୍ତି । ସୁତରାଂ ଈଶ୍ୱର ହେଉଛନ୍ତି ଆମର ନିଷ୍କାମ ସେବକ । ତାଙ୍କର ଏହି ସେବକପଣିଆ ପାଇଁ ଆମେ ତ କୌଣସି ସମ୍ବର୍ଦ୍ଧନା ଅବା ପୁରସ୍କାର ଦେଇପାରୁନାହେଁ, କିମ୍ବା ସେ ମଧ୍ୟ ଗ୍ରହଣ କରନ୍ତି ନାହିଁ । ସୁତରାଂ ହେ ମହାରାଜ ! ଯଦି ପାରିବେ ଆପଣ ପ୍ରଜାମାନଙ୍କ ପାଇଁ ନିଷ୍କାମ



# ଅଜାଙ୍କ ହଟହଟା

ଶ୍ରୀ କେଦାରେଶ୍ୱର ପଟ୍ଟନାୟକ

ଚଟେଇ ପାରି ଆମ୍ବ ତୋଟାରେ
ଶୋଇଥିଲେ ଦିନେ ଅଜା
ପାନ ବଟୁଆ ମୁଣ୍ଡ ପାଖରେ
ରହିଥିଲା ହୋଇ ସଜା ।
ପାଦକୁ ଚିପି ନାତିଆ ଟୋକା
ଆସିଲା ଧୀରେ ଧୀରେ
ପାନବଟାରୁ ଗୁଆ କଟୁରୀ
କାଢ଼ିଲା ଯତନରେ
ଚଟେଇ ତଳେ ଲୁଚେଇଦେଲା
ଦେଖିବ ବୋଲି ମଜା
ଗଛ ଉହାଡ଼େ ମନ ଖୁସିରେ
ବଜାଉଥିଲା ବାଜା ।
ଚନ୍ଦାମୁଣ୍ଡକୁ ଆଉଁସି ଅଜା
ଉଠିଲେ ହାଇ ମାରି
ପାନବଟାରୁ ପାନଟେ କାଢ଼ି
ଚୂନକୁ ଦେଲେ ମାରି
ଗୁଆକୁ ଧରି ଖୋଜିଲେ କାତି
କାଟିବେ ବୋଲି ଗୁଆ
ପାଇଲେ ନାହିଁ ଗୁଆକାତିଟା
"ନେଲା କେ ବଗୁଲିଆ ?"
ମନ ଦୁଃଖରେ ବଟାକୁ ଅଜା
କାଖରେ ଜାକିଦେଲେ
ଚଟକଣାଟେ ଚଖେଇଦେବେ
ନାତିକୁ ଭାବିନେଲେ
ଚଟେଇଟାକୁ ଧରିଲେ ଅଜା
ଦେଖିଲେ ଗୁଆକାତି
ଖାଇଲେ ପାନ ଅଜାଙ୍କ ମନ
ଏଣିକି ହେଲା ଶାନ୍ତି ।
ଦେଖିଲେ ଅଜା ଗଛ ଉହାଡ଼େ
ହସୁଛି ନାତିଟୋକା
ବାଙ୍କୁଲି ଟେକି ଧାଇଁଲେ ଅଜା
ଧାଇଁଲା ନାତିଟୋକା

*ଧୋଡ୍ରା, ନବରଙ୍ଗପୁର* ✿✿

---

ସେବକଟିଏ ପାଲଟିଯାଆନ୍ତୁ । ଦେଖିବେ ପରମକାରୁଣିକଙ୍କଠାରୁ ନିଶ୍ଚୟ କୃପାର ସମ୍ବର୍ଦ୍ଧନା ପାଇପାରିବେ ।"

ରାଜା ସୁମନ୍ତଦେବ କାଠୁରିଆଟିର କଥାରେ ପ୍ରୀତ ହୋଇ ତାଙ୍କ ବେକରେ ନିଜର ରତ୍ନହାରଟିଏ ଲମ୍ବାଇଦେଇ ବିଦାୟ ନେଲେ ।

ନୀତିବାଣୀ-- ନିଷ୍କାମ ସେବାରେ ପରମ କାରୁଣିକଙ୍କର କୃପା ଲାଭ କରିପାରିବେ । (ମଦର୍ ଟେରେସା)

*ଭାଟପଡ଼ା, ତିହିଡ଼ି, ଭଦ୍ରକ- ୭୫୬୧୩୦* 

---

**କ୍ରୀଡ଼ା କୁଇଜର ଉତ୍ତର**--୧ । କସରତ୍, ୨ । ପାକିସ୍ତାନ, ୩ । ବକ୍ସିଂ, ୪ । ଫୁଟବଲ୍, ୫ । ଫୁଟବଲ୍, ୬ । ସୁଇଜରଲାଣ୍ଡ୍ ୭ । ଫୁଟବଲ୍ , ୮ । ଟି. ଏମ୍ ଦିଲ୍‌ଶାନ୍ , ୯ । ନର୍ଥଜୋନ୍, ୧୦ ।ଝାଡ଼ଖଣ୍ଡ, ୧୧ । ଲିଓନେଲ୍ ମେସି ।

ଶ୍ରୀ କାଞ୍ଚି ନାରାୟଣ ମହାନ୍ତି

## ଘୁଙ୍ଗୁର କାହିଁକି ମୁଁ ବାନ୍ଧିଲି

ଓଡ଼ିଶା ପ୍ରଥମେ ବିଶ୍ୱଦେବତା ଶ୍ରୀଜଗନ୍ନାଥ ଓ ଦ୍ୱିତୀୟରେ ଓଡ଼ିଶୀ ନୃତ୍ୟ ପାଇଁ ବିଶ୍ୱପ୍ରସିଦ୍ଧ। ସାରା ବିଶ୍ୱରେ ଓଡ଼ିଶୀ ନୃତ୍ୟ ପ୍ରତି ଏତେ ଅନୁରାଗ ଯେ ବିଦେଶୀ ମହିଳା ଇଲିଆନା ସିତାରିଷ୍ଟିଙ୍କ ପରି ବହୁ ନୃତ୍ୟଶିଳ୍ପୀ ଓଡ଼ିଶାକୁ ତାଙ୍କର ପ୍ରିୟ ଭୂମି ଭାବରେ ଗ୍ରହଣ କରିନେଇଛନ୍ତି। ଆମ ଶିଶୁ କଳାକାରମାନେ ମଧ୍ୟ ପାଦରେ ଘୁଙ୍ଗୁର ବାନ୍ଧି ଅନେକ ମୁଦ୍ରାରେ ଆଜି ବିଭିନ୍ନ ନୃତ୍ୟଶାଳାରେ ଅଧ୍ୟୟନରତ।

ପ୍ରାଚୀ ହୋତା ସମ୍ବଲପୁରରେ ଜନ୍ମ ହେଲେ ମଧ୍ୟ ତାଙ୍କର ନୃତ୍ୟକଳାର ଉତ୍କର୍ଷ ରାଜ୍ୟ ତଥା ସାରା ଦେଶରେ ଚହଟି ଯାଇଛି। ମାତ୍ର ତିନି ବର୍ଷ ବୟସରେ ସେ ଟିଭିରେ ନାଚ ଦେଖିଲେ ବା ଗୀତଟିଏ ଶୁଣିଲେ, ଗୀତର ତାଳେ ତାଳେ ନାଚି ଉଠୁଥିଲେ।

ତାଙ୍କର ପ୍ରଥମ ନୃତ୍ୟଗୁରୁ ଅର୍ପିତା ଭେଙ୍କଟେଶ। କଲିକତାରେ ସେ ସୁପ୍ରସିଦ୍ଧ ନୃତ୍ୟଗୁରୁ ଆଲୋକା କାନୁନ୍‌ଗୋ ଓ ମୁରଲୀଧର ମାଝିଙ୍କଠାରୁ ମଧ୍ୟ ଓଡ଼ିଶୀ ଶିକ୍ଷା କରିଥିଲେ। ମାତ୍ର ଚାରିବର୍ଷ ବୟସରେ ପ୍ରଥମେ ମଞ୍ଚରେ ନୃତ୍ୟ ପରିବେଷଣ କଲେ ଏବଂ ଇଟିଭିରେ ବଙ୍ଗଳା ପରଦାରେ ନୃତ୍ୟ ପାଇଁ ସୁଯୋଗ ପାଇଲେ। ଗୁରୁ ବଟୁ ପାଳ ଓ କାକଲି ଦତ୍ତଙ୍କଠାରୁ ଲୋକନୃତ୍ୟ ଓ ରବୀନ୍ଦ୍ର ନୃତ୍ୟ ତାଲିମ୍ ନେଇ ପରୀକ୍ଷାରେ ସୁନାମ ପାଇଲେ।

ମୁମ୍ବାଇଠାରେ ଅଖିଳ ଭାରତୀୟ ଗାନ୍ଧର୍ବ ମହାବିଦ୍ୟାଳୟ ମଣ୍ଡଳରେ 'ନୃତ୍ୟ ବିଶାରଦ' ପାଠ୍ୟକ୍ରମ ଶେଷ କଲେ।

୨୦୦୪ ମସିହାରେ ପିତାମାତାଙ୍କ ସ୍ଥାନାନ୍ତର ଅନୁଯାୟୀ ସେ ମହାନଗରୀ ଦିଲ୍ଲୀରେ ନୃତ୍ୟଗୁରୁ ହରେକୃଷ୍ଣ ବେହେରାଙ୍କଠାରୁ ଓଡ଼ିଶୀ କେନ୍ଦ୍ରରେ ଓଡ଼ିଶୀ ଶିକ୍ଷା କଲେ। ତା'ପରେ ପ୍ରଖ୍ୟାତ ଗୁରୁ ଗଙ୍ଗାଧର



ପ୍ରଧାନଙ୍କର ଓଡ଼ିଶୀ ନୃତ୍ୟ ଏକାଡେମୀର ଶିଷ୍ୟା ଓ୍ୱାଇ ଆଶା-କୁମାରୀଙ୍କଠାରୁ ଓଡ଼ିଶୀ ତାଲିମ୍ ନେଲେ। ମାତ୍ର ବାରବର୍ଷ ବୟସରେ ସେ ଭାରତ ସରକାରଙ୍କର ସି.ସି.ଆରଟି ପକ୍ଷରୁ ସମ୍ମାନଜନକ ଛାତ୍ରବୃତ୍ତି ଲାଭ କଲେ। ଏଥିସହିତ ସେ ସୀତାର ବାଦନ ଶିକ୍ଷା କରିଥିଲେ ସଙ୍ଗୀତା ମାତେଙ୍କଠାରୁ ଏବଂ ହିନ୍ଦୁସ୍ଥାନୀ ଭୋକାଲ ଗୁରୁ ଶ୍ରୀମତୀ ଡ.ବିଦ୍ୟା ତ୍ରିପାଠୀଙ୍କଠାରୁ ଶିକ୍ଷା କଲେ।

ପାଠପଢ଼ା ସହିତ ନୃତ୍ୟ, ବାଦ୍ୟ ସଙ୍ଗୀତ ଶିକ୍ଷା କରି ସେ ଓଡ଼ିଶାର ମାନ ବୃଦ୍ଧି କରି ବହୁ ସମ୍ମାନର ଅଧିକାରୀ ହୋଇପାରିଛନ୍ତି । ଆମ ରାଜ୍ୟର ରାଜଧାନୀରେ ଆୟୋଜିତ  ଆନ୍ତର୍ଜାତୀୟ ନୃତ୍ୟୋତ୍ସବ ଠାରୁ ଭାରତବର୍ଷର ରାଜଧାନୀ ଦିଲ୍ଲୀ, ବାଙ୍ଗାଲୋର ଓ ଔରଙ୍ଗାବାଦର ବହୁ ସମାରୋହରେ ନୃତ୍ୟ ପରିବେଷଣ କରି ଉଚ୍ଚ ପ୍ରଶଂସିତା ହେବା ସହ ସମ୍ବର୍ଦ୍ଧିତ ହୋଇଛନ୍ତି।

## ୧୦୦ କୋଟିର ସୋନାକ୍ଷୀ ଏବେ ବି ଘରେ ଛୁଆ

ବଲିଉଡ୍‌ରେ ପହିଲି ପାଦ ପକାଉ ପକାଉ ସୋନାକ୍ଷୀଙ୍କର ପ୍ରତିଭା ବିକଶିତ ହେବାରେ ଲାଗିଛି। ବର୍ତ୍ତମାନ ଦୀପିକାଙ୍କ ପରେ ସୋନାକ୍ଷୀଙ୍କ ପଛରେ ନିର୍ମାତା, ନିର୍ଦ୍ଦେଶକଙ୍କ ଧାଡ଼ି। ୨୦୧୦ରେ ଦବଙ୍ଗରେ ଅଭିନୟର ସୁଯୋଗ ମିଳେ। 'ଲୁଟେରା'ରେ ହିରୋ ରଣବୀର କପୁରଙ୍କ ସହ ଅଭିନୟରୁ ଆଉ ଦି'ପାଦ



ସଫଳତା ମିଳିଯାଏ। ପ୍ରଥମେ ପ୍ରଥମେ ସେ ଏତେ ବଲିଉଡ୍ ଅଭିନେତ୍ରୀମାନଙ୍କ ଭିଡ଼ ଭିତରେ ନିଜକୁ କେତେ ଦୂର ପ୍ରତିଯୋଗିତାରେ ଆଗେଇ ପାରିବେ, ଏହା ସନ୍ଦେହ ଲାଗୁଥିଲା। ବିହାରର ନେତା ଶତ୍ରୁଘ୍ନ ସିହ୍ନାଙ୍କ ଲଳନା ସୋନାକ୍ଷୀ  ଏବେ ବଲିଉଡ୍‌ରେ ବ୍ୟସ୍ତ ନାୟିକାମାନଙ୍କ ମଧ୍ୟରୁ ଜଣେ। ସେ ପୁଣି ମାତ୍ର ତିନି ବର୍ଷର ବ୍ୟବଧାନ, ଯେ ନିଜେ ବି ଥିଲେ ନିଜ ଦକ୍ଷତା ଉପରେ ସନ୍ଦିହାନ।

ଆଇଟମ୍ ଗୀତରେ ଆଜିକାଲି ଅଳ୍ପ ସମୟ ଭିତରେ ଅଧିକ ରୋଜଗାର ହେବାର ବାଟ ଫିଟିଛି। ସେ 'ହିମ୍ମତ ବାଲା', 'ଓଏମ୍‌ଜି' ଇତ୍ୟାଦିରେ ଖୁବ୍ ଭଲ



ପ୍ରଦର୍ଶନ କରିଥିଲେ ବି କେବେ ଅଙ୍ଗ ଅନାବଶ୍ୟକ ପ୍ରଦର୍ଶନକୁ ପ୍ରଶ୍ରୟ ଦେଇନାହାନ୍ତି ।

୧୦୦ କୋଟିର ରାଣୀ ଭାବରେ ୧୦୦ କୋଟି ବିଜିନେସ୍ କ୍ଲବ୍‌ରେ ସାମିଲ୍ ହେବାର ଦୌଡ଼ରେ ଅଛନ୍ତି ଆଜିର ମୋଟା ଅଙ୍କ ଅର୍ଜନ କରୁଥିବା ବ୍ୟବସାୟୀ, ଖେଳାଳି ଆଉ ଷ୍ଟାର୍‌ମାନେ । ତେବେ ସୋନାକ୍ଷୀ ୧୦୦ କୋଟିର ରାଣୀ ହେବାକୁ ବସିଥିଲାବେଳେ ଛୋଟ-ପିଲାଙ୍କ ଭଳି ସୁଟିଂ କାମରେ ଥିଲେ ରାତି ଗୋଟାଏ ପୂର୍ବରୁ ଘରେ ନ ପହଞ୍ଚିଲେ ଘରେ ତାଙ୍କୁ କଡ଼ା ତାଗିଦ୍ । ଯେତେ ବିଳମ୍ବରେ ଶୋଇଲେ ମଧ୍ୟ ସକାଳେ ଶଯ୍ୟାତ୍ୟାଗ କରିବାକୁ ବାଧ୍ୟ । ନିଜ ରୁମ୍‌କୁ ପରିଷ୍କାର କରିବା ପାଇଁ ମାଆଙ୍କର ଏବେ ବି ତାଗିଦ୍ ଜାରି ରହିଛି ।

ଯେତେ ଯିଏ ରୋଜଗାର କଲେ ବା ଉଚ୍ଚ ପ୍ରଶଂସିତ ହେଲେ ବି ବାପମାଆଙ୍କର ସଂସ୍କାର ପ୍ରତି ସମ୍ମାନ ଦେବା ଉଚିତ ।

*'ଆଶ୍ରମ', ଶ୍ରୀବିହାର କଲୋନି, କଟକ- ୮*

⌘⌘

## ସବୁଠାରୁ ପୁରାତନ ଖେଳ

ଆଜିକାଲି ଖେଳର ଚାହିଦା ବୃଦ୍ଧି ପାଇବାରେ ଲାଗିଛି । କାର୍‌ଦୌଡ଼, ଘୋଡ଼ାଦୌଡ଼, କୁସ୍ତି, ଫୁଟ୍‌ବଲ୍, ଭଲିବଲ୍ ଇତ୍ୟାଦି ଇତ୍ୟାଦି । ଖେଳ କେବେଠାରୁ ଆରମ୍ଭ ହୋଇଥିଲା, ତାହା କେହି ଜାଣନ୍ତିନାହିଁ ହୁଏତ ।

ସବୁଠାରୁ ପୁରାତନ ଖେଳ ହେଲା ନୌକାଚାଳନା । ଡୋଗେଟସ୍ କୋଟ୍ ଆଣ୍ଡ ବ୍ୟାଜ୍ ରେସ୍ (Doggetts Coat and Badge Race)।ଏହା ଇଂଲଣ୍ଡର ଥେମସ୍ ନଦୀରେ ଆରମ୍ଭ ହୋଇଥିଲା ଏବଂ ଏହା ୧୭୧୫ ପର୍ଯ୍ୟନ୍ତ ନିରବଚ୍ଛିନ୍ନ ଭାବରେ ଚାଲିଥିଲା । ନିଉମାର୍କେଟ୍ ଟାଉନ୍ ପ୍ଲେଟ୍ ଘୋଡ଼ାଦୌଡ଼ ମଧ୍ୟ ଅତି ପୁରାତନ; ମାତ୍ର ଏହା କେତେବର୍ଷ ପରେ କୌଣସି କାରଣରୁ ବନ୍ଦ ହୋଇଗଲା ।

## ଅଛି – ନାହିଁ

ତଳ ଦୁଇଟି ଚିତ୍ରରେ ଅତି କମ୍‌ରେ ୬ଟି ପ୍ରଭେଦ ଅଛି, ଖୋଜି ବାହାର କରନ୍ତୁ ତ ! (ଉତ୍ତର ୪୮ ପୃଷ୍ଠାରେ)







# ଏମିତିଆ ଗୀତ ମିଳିବ କାହିଁ !

ଶ୍ରୀ ସଂଗ୍ରାମ କେଶରୀ ପୃଷ୍ଟି

ଗୋଟିଏ ଗାଁରେ ସ୍ତ୍ରୀଲୋକଟିଏ ରହୁଥିଲା । ସେ ଭାରି କଳିହୁଡ଼ୀ । ଟିକିଏ ଟିକିଏ କଥାରେ କଳି-ଝଗଡ଼ା କରିବା ଥିଲା ତା' ଅଭ୍ୟାସ । ଏଇଥିପାଇଁ ପାଖ ପଡ଼ୋଶୀମାନେ, ଏପରିକି ତା' ସ୍ୱାମୀ ମଧ୍ୟ ତା' ସହିତ କଥା ହେବା ପାଇଁ ଡରୁଥିଲେ । ତେଣୁ ସମସ୍ତେ ତା'ଠୁ ଦୂରେଇ ରହୁଥିଲେ ।

ଦିନେ ସେହି ସ୍ତ୍ରୀଲୋକଟି ଘରେ ଥାଏ । ଏତିକିବେଳେ ତା' କାନରେ ବାଜିଲା ଗୋଟିଏ ସୁନ୍ଦର ଗୀତ । ଗୀତଟି ତାକୁ ଭଲଲାଗିଲା । କେଉଁଠୁ ଏ ଗୀତ ଆସୁଛି ଖୋଜି ଖୋଜି ସେ ଯାଇ ପଡ଼ୋଶୀ ଘରେ ପହଞ୍ଚିଲା । ପଚାରିଲା--ଆଚ୍ଛା କହିଲ, ଏ ଗୀତ କେମିତି ପାଇହେବ?

ପଡ଼ୋଶୀ ଘରର ଲୋକମାନେ ତ ଏ କଳିହୁଡ଼ୀକୁ ଭଲ ଭାବରେ ଜାଣିଥିଲେ । ତେଣୁ ସେମାନେ କହିଲେ--ଓଃ ଏଇ କଥା! ଏ ଗୀତ ପାଇବା ତ ବହୁତ ସହଜ । ଏହା ପରା ବଜାରରେ ମିଳୁଛି ! ତୁମେ ଚାହିଁଲେ ତାହା କିଣିକି ଆଣିପାରିବ ।

ଏକଥା ଶୁଣି ସ୍ତ୍ରୀଲୋକଟି ଭାରି ଖୁସି ହୋଇଗଲା । ସେ ଘରକୁ ଯାଇ ତା' ସ୍ୱାମୀଙ୍କୁ ବଜାରରୁ ଗୀତଟିଏ କିଣି ଆଣିଦେବା ପାଇଁ କହିଲା ।

ସ୍ୱାମୀ ବିଚରା ଏବେ କରେ କ'ଣ ? ସ୍ତ୍ରୀ କଥା ମାନିବାକୁ ତ ପଡ଼ିବ । ତେଣୁ ସେ ପଇସା ଧରି ଗୀତ କିଣିବାକୁ ବଜାରକୁ ଗଲା । ଗୋଟିଏ ଦୋକାନକୁ ଯାଇ ପଚାରିଲା-- କ'ଣ ଭାଇ ଏଠାରେ ଗୀତ ମିଳିବ?

ଏକଥା ଶୁଣି ଦୋକାନୀ ବୁଝିଲା ଲୋକଟି ଗୋଟେ ନିପଟ ମଫସଲିଆ । ତା' ସହିତ ମୂର୍ଖ ମଧ୍ୟ । ତେଣୁ ସେ ତାଚ୍ଛଲ୍ୟ କରି କହିଲା-- ଏଇଠି ନୁହେଁ, ଆଗକୁ ଯାଅ, ସେଠାରେ ଗୀତ ମିଳିବ ।

ଏ ଦୋକାନରୁ ସେ ଦୋକାନ, ଏ ବଜାରରୁ ସେ ବଜାର ବୁଲି ବୁଲି ଲୋକଟି ନାକେଦମ୍ ହୋଇଗଲା; ଗୀତ କିନ୍ତୁ ମିଳିଲା ନାହିଁ । ସେତେବେଳକୁ ସଞ୍ଜ ହୋଇଯାଇଥିଲା । ଅନ୍ଧାର ବି ମାଡ଼ି ଆସିଥିଲା । ଗୀତ କିଣି ପାରି ନ ଥିବାରୁ ଲୋକଟି ଭୟରେ ଛାନିଆଁ । ତା' ସ୍ତ୍ରୀ ଏକଥା ଜାଣିଲେ ରଖେଇ ବସେଇ ଦେବନାହିଁ ।

କ'ଣ କରିବ ଭାବି ଭାବି ଲୋକଟି ଯାଉଥିଲା । ଜହ୍ନ ଆଲୁଅରେ ସେ ଦେଖିଲା ମୂଷାଟିଏ ବିଲ ଭିତରକୁ ଯାଇ ମାଟି ଖୋଳୁଛି । ସେଥିରୁ ଶବ୍ଦ ବାହାରୁଥିଲା-- ଖରର୍....ଖରର୍... ଲୋକଟି ମୁଣ୍ଡକୁ ବୁଦ୍ଧି ଜୁଟିଲା । ଏଇ ଶବ୍ଦକୁ ନେଇ ସେ ମନରେ ଗୀତର ଧାଡ଼ିଟିଏ ବାନ୍ଧିଲା-- ଖୋଳୁଛି ଖରର୍.....ଖରର୍.... ।

ବାସ୍, ଲୋକଟି ଏଥର ଆଗକୁ ଚାଲିଲା । ଦେଖିଲା ଶୁଖିଲା ପତ୍ର ଭିତରେ ସାପଟିଏ ଯାଉଛି ।

ସେଥିରୁ ସରର୍.....ସରର୍....ଶବ୍ଦ ଆସୁଛି। ଏହାକୁ ନେଇ ଲୋକଟି ଗୀତର ତା' ପରଧାଡ଼ି ମନେ ରଖିଲା-- ଧାଉଁଛି ସରର୍....ସରର୍....।

ଦୁଇଟି ଧାଡ଼ି ଘୋଷି ଘୋଷି ଲୋକଟି ଫେର୍ ଆଗକୁ ଚାଲିଲା। ଦେଖିଲା ଗୋଟିଏ ଠେକୁଆ। ତାକୁ ଦେଖି ଠେକୁଆଟି ଧ୍ୟାନର ସହିତ ଚାହିଁଲା। ତା' ମିଟିମିଟି କରୁଥିବା ଆଖିଯୋଡ଼ିକୁ ଦେଖି ଲୋକଟି ମନକୁ ଗୀତର ଧାଡ଼ିଟିଏ ଜୁଟିଲା-- ଦେଖୁଛି ଟଗର୍.....ମଗର.....।

ଗୀତର ତିନୋଟି ଧାଡ଼ି ପାଇଲା ପରେ ଲୋକଟି ଭାରି ଖୁସି ହୋଇଗଲା। ଯା' ହେଉ, କିଛି ନହେଲେ ତା' ସ୍ତ୍ରୀଠାରୁ ଗାଳି ପାଇବାରୁ ମୁକ୍ତି ତ ମିଳିବ। ଏମିତି ଭାବି ଆଗକୁ ପାଦ ବଢ଼ାଇଲା ବେଳକୁ ସେ ଗୋଟିଏ ହରିଣକୁ ଡେଉଁଥିବାର ଦେଖିଲା। ଏହି ଶବ୍ଦକୁ ନେଇ ସେ ଗୀତର ଧାଡ଼ିଟିଏ ଭାବିଲା-- ଡେଉଁଛି ଖପର......ଖାପର.......।

ବାସ୍ ଗୀତଟିଏ ହୋଇଗଲା। ଏହି ଚାରିଧାଡ଼ିର ଗୀତଟିକୁ ନେଇ ଲୋକଟି ତା' ଘରେ ପହଞ୍ଚିଲା। ସ୍ୱାମୀଙ୍କୁ ଦେଖି ସେହି ସ୍ତ୍ରୀ ପଚାରିଲା--- ଗୀତ କିଣିକି ଆଣିଛ ତ?

ଲୋକଟି କହିଲା-- ହଁ, ହଁ ତୁମ ପାଇଁ ଖୋଜି ଖୋଜି ଗୀତଟିଏ ପରା କିଣିକି ଆଣିଛି। ଏଇ ଶୁଣ--

ଖୋଳୁଛି ଖରର୍...ଖରର୍...
ଧାଉଁଛି ସରର୍...ସରର୍...
ଦେଖୁଛି ଟଗର...ମଗର...
ଡେଉଁଛି ଖପର...ଖାପର...।

ସ୍ତ୍ରୀ ମନକୁ ଗୀତଟି ବେଶ୍ ପାଇଲା। ସେ ତାକୁ ସଙ୍ଗୀତ ରାଗରେ ଗାଇବାକୁ ଅଭ୍ୟାସ କଲା।

ସେଦିନ ରାତି ଅଧ ହେଲା। ସ୍ତ୍ରୀଲୋକଟି ନିଦରୁ ଉଠିଲା। ପାଖ ପଡ଼ୋଶୀଙ୍କ ଶୁଣାଇବା ଲାଗି ସେ ବଡ଼ପାଟିରେ ଏହି ଗୀତଟିକୁ ଗାଇବାକୁ ଲାଗିଲା।

ଠିକ୍ ଏହି ସମୟରେ ଚୋରମାନେ ଚୋରି କରିବା ପାଇଁ ଘରେ ପହଞ୍ଚିଲେ। ସୁବିଧା ଦେଖି ଘର କାନ୍ଥରେ ସିନ୍ଧି ଖୋଳିବାକୁ ଲାଗିଲେ। ସ୍ତ୍ରୀଲୋକଟି ଅବା ଏସବୁ କଥା ଜାଣିବ କେମିତି ! ନିଜର ବଡ଼ିମା ଦେଖାଇବାକୁ ଯାଇ ସେ ବଡ଼ ପାଟିରେ ଗାଇଲା ଗୀତର ପ୍ରଥମ ଧାଡ଼ି-

ଖୋଳୁଛି ଖରର୍...ଖରର୍...

ଏକଥା ଶୁଣି ଚୋରମାନେ ଭାବିଲେ, ଆରେ ଆମକୁ କିଏ ଆଉ ଦେଖିଦେଲା କି ! ତେଣୁ ସେମାନେ ଭୟରେ ସେଇଠୁ ଖସିଯିବାକୁ ବାହାରିଲେ।

ସ୍ତ୍ରୀଲୋକଟି ଗୀତର ଦ୍ୱିତୀୟ ଧାଡ଼ି ଗାଇଲା--

ଖସୁଛି ସରର୍...ସରର୍...

ଚୋରମାନେ ଭାବିଲେ-- ଘରୁ ସେମାନଙ୍କୁ କିଏ ଜଣେ ଦେଖୁଛି। ଘର ଭିତରେ କ'ଣ ଚାଲୁଛି ଦେଖିବା ପାଇଁ ସେମାନେ ଝରକାର କଣା ବାଟେ ଦେଖିବାକୁ ଲାଗିଲେ।

ସ୍ତ୍ରୀଲୋକଟି ଗାଇଲା-- ଦେଖୁଛି ଟଗର....ମଗର...।

ଚୋରମାନେ ଭାବିଲେ-- କଥା ସରିଲା। ଘରବାଲା ଆମକୁ ଦେଖିଦେଇଛନ୍ତି, ତେଣୁ ଏମିତି ଗୀତ ଗାଉଛନ୍ତି। ଏଠାରୁ ପଳାଇଯିବା ନିହାତି ଦରକାର। ଏଇଆ ଭାବି ଚୋରମାନେ ଡେଇଁ ପଳାଇ ଯିବାକୁ ବାହାରିଲେ।

ସ୍ତ୍ରୀଲୋକଟି ଏଥର ଗାଇଲା ଗୀତର ଶେଷ ଧାଡ଼ି- ଡେଉଁଛି ଖପର୍...ଖାପର୍...।

ଗୀତ ଶୁଣି ଚୋରମାନେ ତ ପଳାଇଗଲେ। ସକାଳୁ ସ୍ୱାମୀ ଯେତେବେଳେ ଘରେ ସିନ୍ଧି ଦେଖିଲା, ଆଶ୍ଚର୍ଯ୍ୟ ହୋଇଗଲା। ସେ ଏଥର ଅସଲ କଥାଟା ବୁଝିପାରିଲା। ଚୋରମାନେ ତା' ହେଲେ ଗୀତ ଶୁଣି ଖସି ପଳାଇଛନ୍ତି। ଚୋରି କରିବାକୁ ସୁବିଧା ପାଇପାରି-ନାହାନ୍ତି।

ଏକଥା ଜାଣି କଳିହୁଡ଼ୀର ସ୍ୱାମୀ ଛାତି ଫୁଲାଇ ତା' ସ୍ତ୍ରୀକୁ କହିଲା-- ଦେଖ, ମୁଁ କେମିତି ବଢ଼ିଆ ଗୀତଟିଏ କିଣିକି ଆଣିଛି। ଏହାରି ପାଇଁ ଜାଣ ଆମ ଘରେ ଚୋରି ହେବାରୁ ରକ୍ଷା ପାଇଲା।

ସ୍ୱାମୀଙ୍କ କଥା ଶୁଣି ସ୍ତ୍ରୀ ଜଣଙ୍କ ପ୍ରଥମ ଥର ପାଇଁ ଖୁସି ହେଉଥିବାର ଜଣାଗଲା।

(ମଧ୍ୟପ୍ରଦେଶର ଲୋକକଥା)

*କିଶୋରନଗର ହାଇସ୍କୁଲ, ରାଜକିଶୋରନଗର, ଅନୁଗୋଳ-୭୫୯୧୨୬*

ଅଛି--ନାହିଁ--୧। ପହରାବାଲାର ଲୁହା ଦଣ୍ଡର ଉପର ଅଂଶ ନାହିଁ, ୨। ଖୁଣ୍ଟର ମଝି ଡିଜାଇନ୍‌ରେ କଳା ଦାଗ, ୩। ଗଡୁର ଠିପିର ଉପର ଅଂଶ ନାହିଁ, ୪। ଲଡୁ ଧରିଥିବା ଲୋକ ପାଖରେ ଗୋଟିଏ ଗିନା ନାହିଁ, ୫। ଖାଉଥିବା ଲୋକର ବାଜୁବନ୍ଧ ଭିନ୍ନ, ୬। ଘରର ଝରକା ଡିଜାଇନ୍ ଭିନ୍ନ ।

**ଚିଠିପତ୍ର ବା ଟଙ୍କା ପଠାଇବାବେଳେ ଗ୍ରାହକ ନମ୍ବର ଓ ପିନ୍‌କୋର୍ଡ ସହ ଠିକଣା ମନିଅର୍ଡର ଫର୍ମର କୁପନରେ ଲେଖିବାକୁ ଅନୁରୋଧ। ଡାକରେ ପଠାହେଉଥିବା ପତ୍ରିକାର ପ୍ରାପକଙ୍କ ଠିକଣା ଉପରେ ଗ୍ରାହକ ନମ୍ବର ଉଲ୍ଲେଖ ଥାଏ ।**



## ହୁନ୍ଦର ଏ ସୁନ୍ଦରର !

ଶ୍ରୀ ଦେବେନ୍ଦ୍ର ଚୌଧୁରୀ

ଆଷାଢ଼ ଆକାଶେ କାଳିଆ ବଉଦ
ତଳେ ବଗ ଧାଡ଼ି ଧାଡ଼ି
ପାଟ-ଯୋଡ଼ ଦେଇ ଉଡ଼ିଯାଉଥିଲେ
ଧୋବଲା ଡେଣାକୁ ଝାଡ଼ି,
ଗହୀର ବିଲରୁ ଫେରୁଥିଲେ ଚଷା
ମନଫୁଲା ଗୀତ ଗାଇ
ସୁଲୁ ସୁଲୁ ବାଆ ଶାଗୁଆ କ୍ଷେତକୁ
ଦେଉଥିଲେ ସାଉଁଳାଇ,
ପାରେନା ମୁଁ ଟିକେ ଜାଣି
କେଜାଣି କାହିଁକି ଆଖି ମୋ' ସିଆଡ଼େ
ଆପେ ହୋଇଯାଏ ଟାଣି ।

ପୂନିଅଁ ସଞ୍ଜରେ ପୂରୁବ ଦିଗରୁ
ଉଇଁ ଆସୁଥିଲେ ଜହ୍ନ
ରୂପେଲି ଶୀତଳ ଜୋଛନା ପରଶେ
ଭିଜୁଥିଲେ ବିଲ, ବନ,

ବଉଳ ପେଛିରେ ନଇଁ ପଡୁଥିଲେ
ଗାଆଁ ତୋଟା ଆମ୍ବ ଡାହି
କୋଇଲିଟି କୁହୁ ଗୀତ ଗାଉଥିଲା
ପତର ଗହଳେ ଥାଇ,
ଏମିତିକା ଛବି ଦେଖି
ମରମ ତଳେ ମୋ' କବିତା ଦି'ଧାଡ଼ି
ଆପେ ହୋଇଯାଏ ଲେଖି ।

ଗୋଧୂଳି ବେଳାରେ ଗାଈଆଳ ପିଲା
ବଇଁଶୀରେ ସୁର ଦେଇ
ଥିରି ଥିରି ପାଦେ ଘରେ ଫେରୁଥିଲେ
ଗୋରୁପଲ ସାଥେ ନେଇ,
ସୁଆରିରେ ବସି ଶାଶୂଘର ଗାଆଁ
ଚାଲିଯାଉଥିଲେ ଝିଅ
ଛୁଟି ଆସୁଥିଲେ ହାକୁମ୍ ଧାବଲ
ଗୀତର ମଧୁର ସୁଅ,
ମନ ମୋର ନାଚିଯାଏ
ଭାବନା ରାଇଜେ ବୁଲିବୁଲିକା ମୁଁ
ଅସରା ଆନନ୍ଦ ପାଏ ।

ପରଜାପତିଟି ଫୁଲେ ଫୁଲେ ଝୁଲି
ଶୋଷି ନେଉଥିଲେ ରସ
ଫୁଲର ଓଠରୁ ଝରି ପଡୁଥିଲେ
ମଧୁଝରା ସୁନା ହସ,
ଭଳି ଭଳି ରଙ୍ଗଭରା ଛବି ଧରି
ଶୋଭା ପାଉଥିଲେ ବହି
କୁନି ପିଲାଟିଏ ମଲାଟରେ ପୁଣି
ଥିଲେ ତା'ର ବସିରହି,
ଗୁଣି ହୋଇଯାଏ ମତେ
ଲାଗେ ଯେମିତିକି କୋଟିନିଧି ହାତେ
ମିଳିଯାଇଅଛି ସତେ !
ସୁନ୍ଦର ତୃପ୍ତିର ଅବସାଦ ନାହିଁ
କହିଥିଲେ ପରା କବି
ମନେପଡ଼ିଯାଏ ତାଙ୍କର ସେ ଗୀତ
ନାଚିଉଠେ ରୂପ-ଛବି,
ତାଙ୍କରି ପରିକା ପଚାରଇ ଯେବେ
ଆପଣା ମନକୁ ମୋର
ଭିତରୁ ମୋ'କିଏ କହଇ, "ଧନରେ-
ହୁନ୍ଦର ଏ ସୁନ୍ଦର ର !!"

*ଡି/୨୦୦, କୋଏଲ ନଗର, ରାଉରକେଲା-୧୪, ସୁନ୍ଦରଗଡ*



## ପୁସ୍ତକ ପରିଚୟ

**ବଗୁଲୀନାନୀ**-- ଲେଖକ- **ଶ୍ରୀ ମାଧବାନନ୍ଦ ପଣ୍ଡା**, କେନ୍ଦ୍ରାପଡ଼ା, ନୟନବିହାର-୩୩, କଷୋଟୀ, ପାଣ୍ଡିରୀ, କେନ୍ଦ୍ରାପଡ଼ା, ମୂଲ୍ୟ- ୪୦ଟଙ୍କା ମାତ୍ର ।

ଡିମେଇ ଆକାରର ଏହି ଶିଶୁ-କବିତା ପୁସ୍ତକଟିରେ, ବସା ଭାଙ୍ଗିବା ମଜା, କିଏ କଅଣ ଖାଏ, ପଖାଳ, ହନୁମାଙ୍କଡ଼ ଓ କୁକୁର, ମଥା ହୁଏ ଅବନତ ଇତ୍ୟାଦି ୫୩ଟି ଶିଶୁ କବିତାରେ ସମୃଦ୍ଧ ହୋଇଛି । ପ୍ରତି ପୃଷ୍ଠାରେ ସୁଦୃଶ୍ୟ ଚିତ୍ର ପିଲାଙ୍କର ଦୃଷ୍ଟି ଆକର୍ଷଣ କରିବ । କବି ଶିକ୍ଷା, ନୀତିକଥା ଆଦି ହାସ୍ୟରସ ମାଧ୍ୟମରେ, ପଶୁପକ୍ଷୀଙ୍କ ମାଧ୍ୟମରେ କବିତାରେ ଫୁଟେଇଛନ୍ତି । ରଙ୍ଗିନ ପ୍ରଚ୍ଛଦଟିରେ ବଗୁଲୀନାନୀ ଗଛ ମୂଳେ ମାଛ ଖାଉଥିବାର ଦୃଶ୍ୟ ରହିଛି । ପୁସ୍ତକଟି ଆଦୃତ ହେବାର ଆଶା ରଖୁଛୁ ।

**ଗପଚାଙ୍ଗୁଡ଼ି**-- ଲେଖକ- **ଶ୍ରୀ ନିରଞ୍ଜନ ପତି,** ଅମଲାପଡ଼ା, ଅନୁଗୋଳ, ମୂଲ୍ୟ- ୨୦ଟଙ୍କା ମାତ୍ର।

ନଅଟି ଶିଶୁ ଗଳ୍ପ ଏହି ଡିମେଇ ପୁସ୍ତକଟିର ଶୋଭା ବର୍ଦ୍ଧନ କରୁଛି। ପ୍ରତି ଗଳ୍ପରେ ଚିତ୍ର ରହିଛି। ଗପଗୁଡ଼ିକର ଭାଷା ଖୁବ୍ ସରଳ ଓ ପିଲାଙ୍କ ମନକୁ ସୁହାଇଲା ଭଳି ଲେଖା ହୋଇଛି। ପଶୁପକ୍ଷୀ, କୀଟପତଙ୍ଗଠାରୁ ଆରମ୍ଭ କରି ମଣିଷ ପର୍ଯ୍ୟନ୍ତ ସଭିଏଁ ଗଳ୍ପଗୁଡ଼ିକର ମାଧ୍ୟମ ଭାବରେ ବର୍ଣ୍ଣିତ। ରଙ୍ଗିନ୍ ପ୍ରଚ୍ଛଦଟିରେ ପଶୁପକ୍ଷୀମାନଙ୍କ ସହିତ ଶିଶୁର ଖେଳିବାର ଦୃଶ୍ୟ ପିଲାଙ୍କୁ ଆକର୍ଷିତ କରିବ ନିଶ୍ଚୟ-- ଏଇ ଆଶା ରଖୁଛୁ।

**ଜୟ ବିଜ୍ଞାନ**-- ଲେଖକ- **ଶ୍ରୀ ବ୍ରଜ ବିହାରୀ ଦାଶ,** ଏଫ୍-୩୨, ସେକ୍ଟର-୬, ରାଉରକେଲା-୭୬୯୦୦୨, ମୂଲ୍ୟ- ୩୦ଟଙ୍କା ମାତ୍ର।

ଏହି ଡିମେଇ ଆକାରର ପୁସ୍ତକଟି ଶିଶୁ ନାଟକଟିଏ। ଏଥିରେ ଜେଜେ, ନାତି ଓ ନାତୁଣୀଙ୍କ ସହିତ କଥୋପକଥନ ଶୈଳୀରେ ଅନେକ ଶିକ୍ଷଣୀୟ ବିଜ୍ଞାନ ତଥ୍ୟ ବର୍ଣ୍ଣନା କରିଛନ୍ତି ଲେଖକ। ଖାଦ୍ୟର ଅପମିଶ୍ରଣ କେମିତି ଜାଣିହେବ, ଲୁଗାରୁ ଦାଗ କେମିତି ଛାଡ଼େ ଇତ୍ୟାଦି ଇତ୍ୟାଦି ପିଲାଙ୍କ ଜାଣିବା ପାଇଁ ରହିଛି। ପ୍ରଚ୍ଛଦଟି ପିଲାଙ୍କ ପାଇଁ ଆକର୍ଷଣୀୟ ହୋଇଛି। ପୁସ୍ତକଟି ଆଦୃତ ହେଲେ ନାଟ୍ୟଲେଖକଙ୍କ ଶ୍ରମ ସାର୍ଥକ ହେବ।

---

**ଅବଶିଷ୍ଟାଂଶ......**

୨୨। ୭-- ଜାପାନ୍ର ପାର୍ଲ୍ୟାମେଣ୍ଟ୍ର ଉଚ୍ଚସଦନ ପାଇଁ ନିର୍ବାଚନର ଫଳାଫଳରେ ପ୍ରଧାନମନ୍ତ୍ରୀ ଶିନ୍‌ଜୋ ଆବେଙ୍କ ନେତୃତ୍ୱାଧୀନ ଶାସକଦଳକୁ ବହୁ ମତ ମିଳିଛି।

୨୨।୭-- ଚୀନ୍‌ରେ ଏବେ ଶକ୍ତିଶାଳୀ ଭୂକମ୍ପରେ ୧୦୦ଜଣ ମୃତ ଓ ୪୦୦ରୁ ଊର୍ଦ୍ଧ୍ୱ ଆହତ।

୨୬। ୭-- ଅଢ଼େଇ ବର୍ଷ ମଧ୍ୟରେ ସିରିୟାରେ ଗୃହଯୁଦ୍ଧରେ ମୃତ୍ୟୁ ସଂଖ୍ୟା ୧ଲକ୍ଷରୁ ଊର୍ଦ୍ଧ୍ୱ।

୨୬। ୭-- ଇଜିପଟ୍‌ରେ ମହମ୍ମଦ ମୋର୍ସିଙ୍କ ସମର୍ଥକଙ୍କର ଏକାଧିକ ର୍‌ୟାଲିରେ ଘଟିଥିବା ହିଂସାରେ ୧୨୦ଜଣ ମୃତ ଓ ୪୫୦୦ରୁ ଊର୍ଦ୍ଧ୍ୱ ଆହତ।

୨୯। ୭-- ଜିମ୍ବାୱେର ବାମହାତି ସ୍ପିନର ପ୍ରାଇସ୍‌ଙ୍କର ଆନ୍ତର୍ଜାତିକ କ୍ରିକେଟରୁ ଅବସର ଘୋଷଣା।

୩୦। ୭-- ଭାରତରେ ଜନ୍ମିତ ମାମନୁନ୍ ହୁସେନ୍ ପାକିସ୍ତାନ ରାଷ୍ଟ୍ରପତି ନିର୍ବାଚନରେ ବିଜୟୀ।

୩। ୭-- ପୂର୍ବ ଆଫଗାନିସ୍ଥାନର ଜଲାଲାବାଦ୍‌ସ୍ଥିତ ଭାରତୀୟ ବାଣିଜ୍ୟିକ ଦୂତାବାସ ଆଗରେ ଏକ ଆତ୍ମଘାତୀ ବିସ୍ଫୋରଣ ଯୋଗୁଁ ୧୨ ମୃତ ଓ ୨୦ ଜଣ ଆହତ।

୩। ୮-- ଜିମ୍ବାୱେର ରାଷ୍ଟ୍ରପତି ଭାବେ ରବର୍ଟ ମୁଗେୱେ ପୁନଃ ନିର୍ବାଚିତ ଏବଂ ହସନ୍ ରୋହାନି ଇରାନର ପରବର୍ତ୍ତୀ ରାଷ୍ଟ୍ରପତି ଭାବେ ଦାୟିତ୍ୱ ନେବେ।

୧୭। ୮-- ଫିଲିପାଇନ୍‌ସ ଉପକୂଳ ସମୁଦ୍ରରେ ଏକ ବିରାଟ ଯାତ୍ରୀବାହୀ ଜାହାଜ ବୁଡ଼ିଯିବାରୁ ୩୧ ଜଣ ମୃତ ଓ ୧୭୧ ନିଖୋଜ।

---

୨୩। ୭-- ଓଡ଼ିଶା ହାଇ-କୋର୍ଟର ବରିଷ୍ଠ ଆଇନ୍‌ଜୀବୀ ତଥା ଓଡ଼ିଶା ଶ୍ରମିକ ଆନ୍ଦୋଳନର ପୁରୋଧା ଅଦ୍ୱୈତ୍ୟ ଚରଣ ମହାନ୍ତିଙ୍କର ୯୦ବର୍ଷରେ ପରଲୋକ।

୩୦। ୭-- ବିଶିଷ୍ଟ ଶିକ୍ଷାବିତ୍ ଡ. ଦେବେନ୍ଦ୍ର ଚନ୍ଦ୍ର ମିଶ୍ରଙ୍କର ୯୨ବର୍ଷରେ ପରଲୋକ। ସେ ରେଭେନ୍‌ସାରେ ୧୯୬୯ ମସିହାରେ ଅଧ୍ୟକ୍ଷ ପଦ ଅଳଂକୃତ କରିବା ସହ ମାଧ୍ୟମିକ ଶିକ୍ଷା ପରିଷଦର ସଭାପତି ଇତ୍ୟାଦି ବହୁ ଗୁରୁତ୍ୱପୂର୍ଣ୍ଣ ପଦବୀରେ ଅବସ୍ଥାପିତ ହୋଇଥିଲେ।

୨୯। ୭-- ବଲିଉଡ୍‌ରେ ୧୪୪ଟି ଚଳଚ୍ଚିତ୍ରରେ ପୁଲିସ୍ ଅଫିସର ଭୂମିକାରେ ଅଭିନୟ କରିଥିବା ଜଗଦୀଶ ରାଜ ଖୁରାନାଙ୍କର ୮୫ ବର୍ଷରେ ମୃତ୍ୟୁ ।

୨୧। ୮-- ସ୍ୱାଧୀନତା ସଂଗ୍ରାମୀ ତଥା ଆଜାଦ୍ ହିନ୍ଦ ଫୌଜର ସହଯୋଗୀ ସୁନୀଲ ରାୟଙ୍କର ୮୫ ବର୍ଷରେ ମୃତ୍ୟୁ ।

## ସେପ୍‌ଟେମ୍ବର - ୨୦୧୩

ଶ୍ରୀ ଅମର କୁମାର ସିଂ

**୧ ।** କାଗଜରେ ବା କାର୍ଡ଼ରେ ଘର କାଟି ଉତ୍ତର ଲେଖନ୍ତୁ ।
**୨ ।** ଶୂନ୍ୟ ଘରେ ଗୋଟିଏ ମାତ୍ର ଅକ୍ଷର ବସାନ୍ତୁ ।
**୩ ।** ଉତ୍ତର କାଗଜରେ ନାମ ଓ ଠିକଣା ଲେଖନ୍ତୁ ।
**୪ ।** ସମ୍ପାଦିକାଙ୍କ ନିଷ୍ପତ୍ତି ଚୂଡ଼ାନ୍ତ ।
**୫ ।** ଆସନ୍ତା ସଂଖ୍ୟାରେ ଫଳ ପ୍ରକାଶ ପାଇବ ।
**୬ ।** ଉତ୍ତର ପହଞ୍ଚିବାର ଶେଷ ତାରିଖ ୨୧ । ୯ ।୨୦୧୩
**୭ ।** ନିୟମାବଳୀ ପଢ଼ି ଉତ୍ତର ଦିଅନ୍ତୁ ।

| | | | | | | |
|---|---|---|---|---|---|---|
| ✤ | ୧ | | | ୨ | ✤ | ✤ |
| ୩ | | ୪ | ୫ | ୬ | | ୭ |
| ✤ | | | | | ✤ | |
| ୮ | | | | ୯ | ୧୦ | |
| ୧୧ | ✤ | ✤ | ୧୨ | | | ✤ |
| ୧୩ | | | | ୧୪ | | ୧୫ |
| | ✤ | ୧୬ | | | | |

**ସୂଚନା**

**ବାମରୁ ଡାହାଣକୁ-** ୧ । ବିଶୁଦ୍ଧ କୋଇଲା (୪), ୩ । ଅବସର (୪), ୬ । ଛୋଟ କଦଳୀପୁଆ (୨), ୮ । ମସଲାବିଶେଷ (୩), ୯ । କଥା (୩), ୧୨ । ରୁଆ ହେବା ଯୋଗ୍ୟ ଚାରାଗଛ (୨), ୧୩ । ଭେଟ (୪), ୧୪ । ଚକ୍ରାକାର ଗତି (୩), ୧୬ । ଦରଦ (୫)

**ଉପରୁ ତଳକୁ--** ୧ । ବିତୃଷ୍ଣା (୩), ୨ । ଅର୍ଜୁନଙ୍କ ରଥ (୪), ୪ । ରାସ୍ତା (୩), ୫ । ସ୍ୱାସ୍ଥ୍ୟ (୪), ୭ । ସୂର୍ଯ୍ୟଙ୍କର ଉତ୍ତର /ଦକ୍ଷିଣ ଦିଗକୁ ଗତି (୩), ୧୦ । ରୋଗବିଶେଷ (୨), ୧୧ । ଶିଶୁ ଖେଳନା (୩), ୧୫ । ଓଜନ ପରିମାଣ (୨)

-- ଉଲୁଣ୍ଡା, ସୁବର୍ଣ୍ଣପୁର-୭୬୭୦୩୪

**ଅଗଷ୍ଟ ମାସ ଶବ୍ଦଧନ୍ଦାର ଉତ୍ତର** (ବାମରୁ ଡାହାଣ)-- ୧ । କନକ, ୩ । ବନଜ, ୬ । ବର, ୮ । ବନ, ୯ । ବଶକ, ୧୧ । ଅନବରତ, ୧୩ । କଦମ, ୧୫ । ମଗ, ୧୬ । ଶମ, ୧୮ । ନବର, ୧୯ । ରସନ ।

ଉପରୁ ତଳ-- ୧ । କବର, ୨ । ନର, ୪ । ନବ, ୫ । ଜନକ, ୬ । ଦଶବଦନ, ୯ । ବନକ, ୧୦ । କରମ, ୧୨ । ବମନ, ୧୪ । ଶମନ, ୧୬ । ଗବ, ୧୭ । ଶସ ।

ସମ୍ପୂର୍ଣ୍ଣ ଠିକ୍ ଉତ୍ତରଦାତା (ଏ ପର୍ଯ୍ୟନ୍ତ ହସ୍ତଗତ ହୋଇଥିବା)-- **ରାସେଶ୍ୱର ମହାନ୍ତ,** ଚମ୍ପୁଆ, କେନ୍ଦୁଝର ।

ବିଳମ୍ବରେ ଆସିଥିବା ଅଗଷ୍ଟ ମାସର ଠିକ୍ ଉତ୍ତରଦାତା-- **ଚନ୍ଦ୍ରଶେଖର ମିଶ୍ର,** ଚମ୍ପୁଆ, କେନ୍ଦୁଝର ।

# ପୃଥ୍ୱୀ କ୍ଷଣକ୍ଷଣକେ ଆନ

## ଓଡ଼ିଶା ଖବର

୧୯ । ୭-- ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟା କ୍ଷେତ୍ରରେ ଉଲ୍ଲେଖନୀୟ ଅବଦାନ ପାଇଁ ଓଡ଼ିଶା ବିଜ୍ଞାନ ଏକାଡେମୀ ପକ୍ଷରୁ ବରିଷ୍ଠ ବୈଜ୍ଞାନିକ ନୃସିଂହ ଚରଣ ପଣ୍ଡାଙ୍କୁ ସମ୍ମାନିତ କରିବା ସହ ୧୦ଜଣଙ୍କୁ ସମ୍ବର୍ଦ୍ଧନା କରାଯାଇଥିଲା ।

୨୩ । ୭-- ଓଡ଼ିଆ ଭାଷାକୁ ଶାସ୍ତ୍ରୀୟ ମାନ୍ୟତା ମିଳିବା ପାଇଁ କେନ୍ଦ୍ର ସାହିତ୍ୟ ଏକାଡେମୀର ସୁପାରିଶ୍ ।

୨୪ । ୭-- ବର୍ଷିଆନ୍ ସାରସ୍ୱତ ସାଧକ ମହାପାତ୍ର ନୀଳମଣି ସାହୁଙ୍କୁ 'ଉତ୍କଳ ରତ୍ନ' ଏବଂ ଏଥି ସହିତ ୨୪ଜଣ କୃତୀ ସାହିତ୍ୟିକ ଉତ୍କଳ ସାହିତ୍ୟ ସମାଜ ପକ୍ଷରୁ ସମ୍ବର୍ଦ୍ଧିତ ।

୨୯ । ୭-- ଓଡ଼ିଶା ହାଇକୋର୍ଟର ଅବସରପ୍ରାପ୍ତ ବିଚାରପତି ବୀରକିଶୋର ମିଶ୍ର ମାନବାଧିକାର ଆୟୋଗର ପରବର୍ତ୍ତୀ ସଦସ୍ୟ ମନୋନୀତ ।

୧ । ୮-- ରାଜ୍ୟରେ ସ୍କୁଲ ଶିକ୍ଷାର ବିକାଶ ପାଇଁ ରାଜ୍ୟ ସରକାରଙ୍କର ୨୫ ହଜାର ଶିକ୍ଷକ ପଦ ପୂରଣ ନିଷ୍ପତ୍ତି ।

୧୯ । ୮-- ପାଟଣାଠାରେ ରେଳ ମାଡ଼ି ଯିବାରୁ ୩୭ଜଣ କାଉଡ଼ିଆଙ୍କର ମୃତ୍ୟୁ ।

୨୦ । ୮-- ରାଞ୍ଚିରେ ଚାଲିଥିବା ୨୫ତମ ପୂର୍ବାଞ୍ଚଳ ଆଥଲେଟିକ୍ ମିଟ୍ର ଶେଷ ଦିନରେ ଓଡ଼ିଶାର ପାଞ୍ଚଟି ସ୍ୱର୍ଣ୍ଣ ସହ ସମୁଦାୟ ୧୬ଟିପଦକ ହାସଲ ।

୨୪ । ୮ ।-- ଶିଶୁସାହିତ୍ୟିକ ଶ୍ରୀ ନଦୀୟା ବିହାରୀ ମହାନ୍ତି ଏବଂ ଯୁବ କଥାକାର ଶ୍ରୀ କ୍ଷେତ୍ରବାସୀ ନାୟକ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ପାଇବା ପାଇଁ ଯୋଗ୍ୟ ବିବେଚିତ ।

## ଭାରତ ଖବର

୧୯ । ୭-- ଜଷ୍ଟିସ୍ ପି. ସଦାଶିବମ୍ଙ୍କର ୪୦ ତମ ପ୍ରଧାନ ବିଚାରପତି ଭାବେ ଶପଥ ଗ୍ରହଣ ।

୨୧ । ୭-- କଲମ୍ବିଆଠାରେ ଚାଲିଥିବା ବିଶ୍ୱକପ୍ ତୀରନ୍ଦାଜୀ (ଷ୍ଟେଜ୍-୩) ପ୍ରତିଯୋଗିତାରେ ଭାରତୀୟ ମହିଳାଦଳର ଚମ୍ପିଆନ୍ ଆଖ୍ୟା ଅର୍ଜନ ।

୨୬ । ୭-- ଭାରତୀୟ ସିନେମାର ୧୦୦ବର୍ଷ ପୂର୍ତ୍ତି ଅବସରରେ ବ୍ରିଟେନ୍ରେ ଜନମତରେ ମେଗାଷ୍ଟାର୍ ଅମିତାଭ ବଚ୍ଚନଙ୍କୁ ଶ୍ରେଷ୍ଠ ବଲିଉଡ୍ ଷ୍ଟାର୍ ମୁକୁଟ ପ୍ରଦାନ ।

୨୯ । ୭--ଚୀନ୍ରେ ଆୟୋଜିତ ବିଶ୍ୱ ଯୁବ ଚେସ୍ ଅଲମ୍ପିଆଡ୍ରେ ଚୂଡ଼ାନ୍ତ ରାଉଣ୍ଡ୍ରେ ଇରାକକୁ ହରାଇ ଭାରତର ଚମ୍ପିଆନ୍ ହାସଲ ।

୩୧ । ୭-- ଦୀର୍ଘ ୫୭ବର୍ଷର ଆନ୍ଦୋଳନ ପରେ ଆନ୍ଧ୍ରପ୍ରଦେଶ ବିଭାଜିତ । ତେଲେଙ୍ଗାନା ରାଜ୍ୟ ଗଠନ ପ୍ରସ୍ତାବ ଅନୁମୋଦିତ ।

୩୧ । ୭--ଆଇ.ପି.ଏଲ୍.-୬ର ସ୍ପଟ୍ ଫିକ୍ସିଂ ମାମଲାରେ ଦାଉଦ୍ ଓ ଶ୍ରୀଶାନ୍ତଙ୍କ ସହ ୩୯ଜଣ ଅଭିଯୁକ୍ତ ।

୫ । ୮-- ନଦୀ ଶଯ୍ୟାରୁ ବାଲି ଉଠାଣ ଉପରେ ଦେଶବ୍ୟାପୀ ନିଷିଦ୍ଧ ଘୋଷଣା । ଖନନ ପାଇଁ ପରିବେଶ ମଞ୍ଜୁରୀ ଅପରିହାର୍ଯ୍ୟ ।

--କେନ୍ଦ୍ର ସରକାରଙ୍କର ମୁଖ୍ୟ ଅର୍ଥନୈତିକ ପରାମର୍ଶଦାତା ରଘୁରାମ୍ ରାଜନ୍ ଭାରତୀୟ ରିଜର୍ଭ ବ୍ୟାଙ୍କ୍ର ପରବର୍ତ୍ତୀ ଗଭର୍ଣ୍ଣର୍ ।

୬ । ୮-- ଜାମ୍ମୁ ଓ କାଶ୍ମୀରର ପୁଞ୍ଚ ସେକ୍ଟରରେ ପାକିସ୍ତାନୀ ସେନାଙ୍କ ଗୁଳିଚାଳନାରେ ୫ଜଣ ଭାରତୀୟ ସୈନ୍ୟ ସହିଦ ।

୧୯ । ୮-- ଚୀନ୍ଠାରେ ଚାଲିଥିବା ୨ୟ ଏସୀୟ ଯୁବକ୍ରୀଡ଼ାରେ ଅଂଶଗ୍ରହଣ କରିଥିବା ୨୬ଜଣ ଆଥଲେଟ୍ରୁ ୧୬ଜଣ ବହିଷ୍କୃତ ।

୨୦ । ୮-- ପ୍ରସିଦ୍ଧ ମରାଠୀ ସାପ୍ତାହିକ 'ସାଧନା'ର ସମ୍ପାଦକ ଆସମାଜ ସଂସ୍କାରକ ୬୫ବର୍ଷ ବୟସର ନରେନ୍ଦ୍ର ଦାଭୋଲକରଙ୍କୁ ହତ୍ୟା । ଅନ୍ଧବିଶ୍ୱାସ ବିରୋଧରେ ସେ ସଚେତନତା ସୃଷ୍ଟି କରୁଥିଲେ ।

## ବିଦେଶ ଖବର

୧୯ । ୭-- ବ୍ରିଟିଶ ନାଗରିକ ଭାବେ ଉମ୍ବଲଡନ୍ ଚମ୍ପିଆନ୍ ହୋଇଥିବା ଆଣ୍ଡି ମରେଙ୍କର ସମ୍ମାନରେ ବ୍ରିଟେନ୍ ସରକାରଙ୍କର ଏକ ଡାକଟିକେଟ୍ ପ୍ରଚଳନ ନିଷ୍ପତ୍ତି ।

(୫୦ପୃଷ୍ଠା ଦେଖନ୍ତୁ)

EDITED, PRINTED & PUBLISHED BY ANASUYA NANDA AT SANSAR PRESS, TALATELENGA BAZAR, CUTTACK-753009
Ph : 2420075, 2422597